# ଅଶ୍ଳୀଳତା

---

ଯୁଗ୍ମ ଲେଖକ—ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍, ଏ
ଶ୍ରୀ ବ୍ରଜମୋହନ ସେନାପତି ଏଲ୍,ଏ ଜି.

ପ୍ରକାଶକ ଓ ମୁଦ୍ରାକର  — ବନମାଳୀ ମିଶ୍ର
ନବ ଭାରତ ପ୍ରେସ୍, କଟକ।

ପ୍ରକାଶକ' ଆଭିଜ୍ଞ—ଏହି ପୁସ୍ତିକା କେବଳ ସମାଜ—ଓ ଧର୍ମ—ଶିଳ୍ପଲିପି—ତତ୍ତ୍ୱବିତ ଓ ବିଶେଷ ଅନୁସନ୍ଧିତ୍ସୁ-ମାନଙ୍କ ପାଇଁ ଘରୋଇ ଭାବରେ ପ୍ରକାଶ କରାଯାଉଅଛି।

ପ୍ରଥମ ମୁଦ୍ରଣ—୫୦୦ ଖଣ୍ଡ ମାତ୍ର।

ମୂଲ୍ୟ—ଆଠଅଣା ମାତ୍ର

ପ୍ରାପ୍ତିସ୍ଥାନ—ଶ୍ରୀ ବ୍ରଜମୋହନ ସେନାପତି
ମେରିଆ ବଜାର, ପୋ: ଅ: କଟକ

# କୃତଜ୍ଞତା ଜ୍ଞାପନ

ଏହି ପୁସ୍ତିକାଟି ଲେଖିବାରେ ଅମ୍ଭେମାନେ ନିମ୍ନଲିଖିତ ଲେଖକ-ମାନଙ୍କର ସାହାଯ୍ୟ ପାଇଅଛୁଁ ।

(୧) Phallic Worship— A History of Sex and Sex Rites in Relation to the Religious of all Races from Antiquity to the Present Day, by George Ryley Scott, F, Ph, S (Eng), F. Z S. (illustrated). privately printed for subscribers only by T. Werner Laurie Ltd, Cobham House 24 & 26 Black Friars Lane, E. C: 4. 1941

(୨) The God-Idea of the Ancients or Sex in Religion by Eliza Burt Gamble G. P. Putnam's sons, London, 1897

(୩) ମାସିକ ପତ୍ରିକାରେ ପ୍ରକାଶିତ ଲେଖକମାନଙ୍କର ପ୍ରବନ୍ଧରୁ କେତେକାଂଶ ।

(୪) ଅବସର ପ୍ରାପ୍ତ ସଂସ୍କୃତ ଅଧ୍ୟାପକ ରାୟ ବାହାଦୁର ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍, ଏ ଙ୍କ ଦ୍ୱାରା ମୁଦ୍ରିତ ସଂସ୍କୃତ ଗ୍ରନ୍ଥ, ଷଡ଼ଶେଷ ୭୪ ବାତ୍ସାୟନଙ୍କ କାମ-ସୂତ୍ରରୁ ପ୍ରାସଙ୍ଗିକ ବିଷୟର ସଂକ୍ଷିପ୍ତ ଉଲ୍ଲେଖ ।

(୫) ଲିପିକାର ରୂପେ ନିଯୁକ୍ତ ଶ୍ରୀ ଜନାମଣି ନାୟକ ।

# ଅଶ୍ଳୀଳତା

( ୧ )

ଓଡ଼ିଆ ଜାତିକୁ ଅନେକ ନିନ୍ଦା କରନ୍ତି ଯେ ଓଡ଼ିଆମାନେ ମନ୍ଦିର ଗାତ୍ରରେ ନାନା ଅଶ୍ଳୀଳ ଛବି ପୂରାଇଛନ୍ତି । ଓଡ଼ିଶାର କାରୁକାର୍ଯ୍ୟରେ ଏହି ଅଶ୍ଳୀଳତା ଏକାକୀ ନୁହେଁ । ଏହା ପୃଥିବୀର ସର୍ବତ୍ର ଦେଖା ଦେଇଥିଲା । ପ୍ରଥମ କଥା ସମୟ ଏବଂ ସ୍ଥାନ ଭେଦରେ ଶ୍ଳୀଳ, ଅଶ୍ଳୀଳ ହୋଇଯାଏ । ପୁଣି ଅଶ୍ଳୀଳ ଶ୍ଳୀଳ ହୋଇଯାଏ । ଫ୍ରାନ୍ସ ଦେଶରେ ଯାହା ଶ୍ଳୀଳ, ଇଂଲଣ୍ଡରେ ହୁଏତ ତାହା ଅଶ୍ଳୀଳ । ସ୍ତ୍ରୀ ଲୋକମାନଙ୍କର ଜାନୁ ଉପରକୁ ଫ୍ରକ ପିନ୍ଧିବା ଆଜି ଅଶ୍ଳୀଳ, ନୁହେଁ କିନ୍ତୁ ଏକ ସମୟରେ ତାହା ଅଶ୍ଳୀଳ ଥିଲା । ଆଜି ସାହେବମାନଙ୍କର ଦେଖା ଦେଖି ଆମ ଘରମାନଙ୍କରେ ମଧ୍ୟ ୧୩।୧୪ ବର୍ଷର ଝିଅମାନେ ଆଣ୍ଠୁ ଉପରକୁ ଫ୍ରକ ପିନ୍ଧି ଫୁର୍ତ୍ତିରେ ସ୍କୁଲକୁ ଯାଉଛନ୍ତି । ୨୦ବର୍ଷ ପୂର୍ବେ ଏପରି କରିଥିଲେ ଅଶ୍ଳୀଳ ବୋଲି କୁହାଯାନ୍ତା । ଆଉ ଯେଉଁମାନେ ଏବେ କରୁଥିବେ, ସେମାନେ ଅଶ୍ଳୀଳତା ପ୍ରଚାର କରୁଛନ୍ତି ବୋଲି ଅଭିଯୁକ୍ତ ହୋଇଥିବେ । ସେବେ ଯୁବତୀ କନ୍ୟା ରଖିବା ଏକ ସମୟରେ ଅନେକ ପରିବାର ଓ ଜାତି ଭିତରେ ଅଶ୍ଳୀଳ ଗଣା ଯାଉଥିଲା । ଆଜି କିନ୍ତୁ ତାହା ନାହିଁ । ସ୍ତ୍ରୀ ଲୋକମାନେ ବିଶେଷତଃ ମଧ୍ୟ ଶ୍ରେଣୀର ଯୁବତୀମାନେ ପର୍ଦ୍ଦାର ବାହାର ହେଲେ ଏକ ସମୟରେ ଅଶ୍ଳୀଳ କୁହାଯାଉଥିଲା । ଆଜି ଅବସ୍ଥା ଏପରି ଆସି ପଡ଼ିଅଛି ଯେ, ସ୍ତ୍ରୀ ଲୋକମାନଙ୍କ ଓଢ଼ଣା ଦେବାଟା ଅଶ୍ଳୀଳତା ମଧ୍ୟରେ ପରିଗଣିତ ହେବ । ଅଭିନୟ ମଧ୍ୟରେ ଅଶ୍ଳୀଳ କଥାବାର୍ତ୍ତା ଏକ ସମୟରେ ଆନନ୍ଦ ଦେଉଥିଲା ଏପରିକି ଭଣ୍ଡମାନଙ୍କୁ ବାହାର ଶଳା ହିସାବରେ ଥିବା କରୁଥିଲା । ବର୍ତ୍ତମାନ ଏହା ଅଶ୍ଳୀଳତା ମଧ୍ୟରେ ଗଣ୍ୟ ହେଉଅଛି । ଯୁବତୀ ସ୍ତ୍ରୀ ଲୋକମାନେ ଏକ ସମୟରେ ତାଙ୍କର ବାଳକୁ ଲୁଚାଇ ରଖୁଥିଲେ । ଆଜି ତାହା ଅର୍ଦ୍ଧେ ଛପା ଅର୍ଦ୍ଧେ ପ୍ରକାଶିତ ହୋଇ ସୌନ୍ଦର୍ଯ୍ୟ ବଢ଼ାଉଅଛି । କେହି କେହି ଏହାକୁ ଅଶ୍ଳୀଳ ଭାବିଲେ ମଧ୍ୟ ଆଉ କେହି କେହି

ଏହାଙ୍କୁ ଶ୍ଳୀଳ କୁହୁଁଛନ୍ତି । ଏକ ସମୟରେ ସ୍ତ୍ରୀଲୋକମାନେ ଲୁଗାଛଡା ଶେମିଜ, ଫ୍ରକ, ଶାଯ୍ଯା ଇତ୍ୟାଦି ବ୍ୟବହାର କରୁ ନ ଥିଲେ । ନ କଲେ ମଧ୍ୟ ସେ ସ୍ତ୍ରୀଲୋକମାନେ ଅଶ୍ଳୀଳ ନ ଥିଲେ । ଆଜି ଯେଉଁମାନେ ଏସବୁ ବ୍ୟବହାର କରୁ ନାହାନ୍ତି ସେ ସ୍ତ୍ରୀ ଲୋକମାନଙ୍କୁ ଅନେ ତଥାକଥିତ ଭଦ୍ର ଲୋକେ ତାଙ୍କୁ ଅଶ୍ଳୀଳ ବୋଲି କହୁଛନ୍ତି । ଯେଉଁ ସ୍ତ୍ରୀ ଲୋକମାନେ କଛାମାରି ଲୁଗାର ଗୋଟିଏ ପାଖ ଟିକିଏ ଅନାବୃତ ରଖିଥାନ୍ତି ସେମାନଙ୍କୁ ଅଶ୍ଳୀଳ କହୁଅଛୁଁ । ଅଥଚ ଏବେ ସହରର ଝିଅ ମାନେ ହୁଲେସନ କ୍ଲାସରେ ହୁଏତ ସେ ଭଳିଆ ପଞ୍ଜାବୀ ପ୍ଲେଟ ଫ୍ରକ୍ ଟିକିଏ ପିନ୍ଧି ଚାଲିଛନ୍ତି । ତାହା ଅଶ୍ଳୀଳ ହେଉନାହିଁ । ପୁଣି ଅନେକ ସ୍ତ୍ରୀଲୋକ ଦେହରେ ଜାମାଟି ଏପରି କଟେଇ ପିନ୍ଧୁଛନ୍ତି ଯେ ତାହା ପିନ୍ଧି ସାରିଲା ପରେ ସ୍ତନ ଦେହମାନ ଦୃଷ୍ଟି ଗୋଚର ହେଉଅଛି । ଏହାକୁ ପୁଣି ସୌନ୍ଦର୍ଯ୍ୟ ବୃଦ୍ଧିର ଏକ ସଦୁପାୟ ବୋଲି ଧରି ଯାଉଛି । ଏହି ସବୁରୁ କେଉଁଟା ଶ୍ଳୀଳ ଓ କେଉଁଟା ଅଶ୍ଳୀଳ, ବୁଝା ଯାଉନାହିଁ । ପୁଣି ସମାଜରେ ଦେବର, ଭାଉଜ ଥଟ୍ଟା ଅଳ୍ପ ପରିମାଣରେ ପ୍ରକାର ଶ୍ଳୀଳତା ମଧ୍ୟରେ ହେଉଛି । ଅଥଚ ଦେଢ଼ଶୁର, ଭାଇ ବୋହୂ ଛୁଅଁ ଛୁଇଁ ହୋଇଗଲେ ଅଶ୍ଳୀଳତାର ସୀମା ହୋଇଗଲା ବୋଲି ଆମ୍ଭେମାନେ କହୁଅଛୁ । ଦକ୍ଷିଣ ଭାରତରେ ବ୍ରାହ୍ମଣ ଘରେ ମଧ୍ୟ ଦେଢ଼ଶୁର, ଭାଇ ବୋହୂ ଛୁଅଁ ଛୁଇଁ ହୁଅନ୍ତି । ତାହା ଶ୍ଳୀଳତାର ଅନ୍ତର୍ଗତ । ଓଡ଼ିଶାରେ ଦେଢ଼ଶୁରର ଛାଇ ଟା ଭାଇବୋହୂ ମାଡ଼ିବ ନାହିଁ; ତାର ଥାଳି ଧୋଇବ ନାହିଁ । ଅଥଚ ସେ ଦେଶରେ ଦେଢ଼ଶୁରର ଅଇଁଠା ଭାଇବୋହୂ ପକ୍ଷରେ ସ୍ୱର୍ଗ-ଅମୃତ । ଏହା ଶ୍ଳୀଳତାର ଉଚ୍ଚ ସୀମାର ଅନ୍ତର୍ଭୁକ୍ତ ।

ଏ ଦୃଷ୍ଟାନ୍ତ ସମାଜର ଲୋକେ ଲୋକେ ଶ୍ଳୀଳତା, ଅଶ୍ଳୀଳତା । ଏଇମାନ ଦେଖାଯାଉ ଜଗତ୍ର ଲୋକମାନଙ୍କର କଥା । ଅଧିକାଂଶ ଜଗତ୍ର ତାର ଆଉ ମଧ୍ୟ ଯୌନ, ଲିଙ୍ଗ, ସ୍ତନ ଦେଇ ଶ୍ଳୀଳତା, ଅଶ୍ଳୀଳତା ବିଚାର କରନ୍ତି ନାହିଁ । ସେମାନଙ୍କ ମନୋବୃତ୍ତି ଏଥିରେ ଦୂଷିତ ହୋଇନାହିଁ । ପାଠୁଆ ଲୋକମାନଙ୍କର ସଭ୍ୟ, ଭଦ୍ର ଲୋକମାନଙ୍କର ମନୋବୃତ୍ତି ଏଥିରେ ଦୂଷିତ ହୋଇଅଛି ।

ବର୍ତ୍ତମାନ ସୂର୍ଯ୍ୟ ଦେଉଳରେ ଓ କୋଣାର୍କ ମନ୍ଦିରରେ ଯୋନ ସମ୍ଭୋଗରେ ଅଶ୍ଳୀଳ ଚିତ୍ର ଅଛି, ଯେ ସବୁରେ ଚିତ୍ର ପରିକଳ୍ପନା କରାଯାଇ । ଏତସମୟରେ ଅଶ୍ଳୀଳ ଗାନ ଦେବଦାସୀ (ବର୍ତ୍ତମାନ ମଧ୍ୟ) ମେଳର ପ୍ରକାଶ କରି ଯାଉଥିଲେ । ଏଥିରୁ ଦର୍ଶନ ଗୃହସ୍ଥଙ୍କ ଅଶ୍ଳୀଳ ଗାନ ଶୁଣି ବଳ ଅନୁକରଣ କରିବାର ଚେଷ୍ଟା ଆଜି ପର୍ଯ୍ୟନ୍ତ ଚଳି ଆସୁ-ଅଛି । ସେହିପରି ଉତ୍କଳ ଦାରେ ଜଗନ୍ନାଥ ମନ୍ଦିର ଭିତରେ ସେଥିପାଇଁ ଅଶ୍ଳୀଳ ଚିତ୍ର ମନ୍ଦିର ପାଖରେ ଥୋଇ ଦିଆଯାଇଛି । ସେହି ଅଶ୍ଳୀଳତା ଦେଖି ଗଡ଼୍ ହୁଏତ ଫେରିଯିବ, ଏହି ମନୋଭାବ ।

ଦ୍ୱିତୀୟ କଥା, ଏତସମ୍ବନ୍ଧରେ ବୈଷ୍ଣବ ଭକ୍ତସାଧୁଥିଲେ ଯେ ଦେବତାମାନଙ୍କୁ ଦେଖିବେ ସେଠି ଶୁଭହେବ, ସେହି ଶୁଭ କଳ୍ପିତ ହୁଏ ସବ ସେହି ଦେବତାମାନଙ୍କୁ ତେଣୁ ସେମାନଙ୍କର ଯୌନ ସମ୍ଭୋଗାସ କାଳରେ ଦେଖିପାରେ । ଦେବ ଦେବୀମାନଙ୍କର ଯୌନ ସମ୍ଭୋଗାସ ଦର୍ଶନ ଯାହା, ବୈକୁଣ୍ଠଦର୍ଶନ ତାହା । ଏହିସବୁ ଭାବର ବଶବର୍ତ୍ତୀ ହୋଇ ଶିଳ୍ପୀମାନେ ଯୌନ ସମ୍ଭୋଗର ମୂର୍ତ୍ତି, ସ୍ତ୍ରୀ ସଂଲଗ୍ନ ମୂର୍ତ୍ତିମାନ ଗଢ଼ିଅଛନ୍ତି । ଏହା କେବଳ ଉତ୍କଳରେ ନୁହେଁ ପୁରୀ, କୋଣାର୍କରେ ନୁହେଁ, ଏହା ପୃଥିବୀର ସର୍ବତ୍ର ।

ବର୍ତ୍ତମାନ ଏହିସବୁ ବୃତ୍ତାନ୍ତ ଆମ୍ଭେମାନେ ସଂକ୍ଷେପରେ ଏଠାରେ ଦେଉଅଛୁଁ । ଏହା ଦେବା ପୂର୍ବରୁ ଆମ୍ଭେମାନେ କହିରଖୁଁ ଯେ ପୃଥିବୀର ସବୁ ଧର୍ମର ମୂଳରେ ତନ୍ତ୍ରାଚାରରେ ଗୁପ୍ତ, ସୁପ୍ତ, ଲୁପ୍ତ, ପ୍ରକାଶିତ ଭାବରେ ଏହା ଦେଖାଯାଉଛି । ଭାରତବର୍ଷର ଲିଙ୍ଗଯୋନି ପୂଜା ପ୍ରକାଶ୍ୟରେ ଲିଙ୍ଗଯୋନିର ପ୍ରତୀକ ହୋଇ ରହିଅଛି । ଖ୍ରୀଷ୍ଟିୟାନମାନଙ୍କର କ୍ରୁଶ ମଧ୍ୟ ଏହି ମୂର୍ତ୍ତି ପ୍ରତୀକର ରୂପାନ୍ତର । ମୁସଲମାନମାନଙ୍କର ତୀର୍ଥସ୍ଥାନ ଏବଂ ତନ୍ମଧ୍ୟର ତନ୍ତ୍ର ଅବଧୂ ଯୋନି ଓ ଲିଙ୍ଗର ଉଦ୍ଦୀପକ । ପୃଥିବୀର ଦେବାଳୟମାନଙ୍କରେ ମନ୍ଦିର, ମସଜିଦ, ଗୀର୍ଜା ପ୍ରଭୃତିରେ ମୈଥୁନ କ୍ରିୟାର ନାନାଛବି ଦେଖାଦେଉଥିଲା । ତନ୍ତ୍ର ମୂଳରେ ଏହା ଧର୍ମବିଶ୍ୱାସ । ଅତଏବ ସେଠି ଭାବ ଅଶ୍ଳୀଳତାର ରୂପ ରଚନା

ଉତ୍ପତ୍ତି ସେ ଜାତ ସେ ଚରମସ୍ଥାନ ହୋଇଯାଉଥିଲ ଏହା ନୈସର୍ଗିକତା ଟିକ୍ ନୁହେଁ । ଇତିହାସ ମଧ୍ୟ ଏହାର ପ୍ରମାଣ ଦିଏ । ଉତ୍କଳର ସଭ୍ୟତା ଯେତେବେଳେ ଶୈଶୋ ଦଶ ଯୁଗପର୍ ବଢ଼ିବାକୁ ଲାଗିଥିଲ ସେହି ସମୟରେ ନାନା ଜଟ ମୂର୍ତ୍ତି ବିକାଶ ଲାଭିଥିଲ ।

ଗ୍ରୀକ୍ ଏବଂ ରୋମାନ ସଭ୍ୟତାରେ ଯୌନ ସମ୍ଭୋଗର ଓ ବିପର୍ଯ୍ୟୟ ଓ ଯଥେଷ୍ଟ ଘଟିଥିଲା । ବାଇବେଲ୍ର ଲେଖାମାନଙ୍କରେ ଏ ସମ୍ଭୋଗର ଯଥେଷ୍ଟ ପରିଚୟ ଅଛି । ସୋଡ଼ମ ଏବଂ ଗୋମ୍ରା ଦେଶଦୁଇଟି ମହାସମ୍ଭୋଗରେ ଧ୍ୱଂସ ହୋଇଗଲା । ଅଲେକଜାଣ୍ଡ୍ରିଆରେ ଭୃଅମ୍ ବୋଲି ଗୋଟିଏ ଜାତି ଅଛନ୍ତି । ସେମାନେ ରାତିରେ ଗୋଟିଏ ତମ୍ବୁ ଭିତରେ ବାପ ପୁଅ, ମା, ଝିଅ ସମସ୍ତେ ଏକାଠି ଶୋଉଥିଲେ ଏବଂ ଯେ ଯାହା ସହିତ ପାରିଲା ଯୌନ ସଂଗମ କରୁଥିଲା । ଇଜେକିଏଲର ଷୋଳପର୍ବ ୧୭ ପଦରେ ଲେଖାଅଛି ଯେ ନାରୀ କନ୍ଧ ପୁରୁଷର ସଂଗମ କରୁଥିଲା । ଅଶ୍ଳୀଳ ଚିତ୍ର ମୂର୍ତ୍ତିମାନ ଲୋକେ ଦେହରେ ବହନ କରୁଥିଲେ ଯେପରିକି କେହି ତାଙ୍କୁ ଆକ୍ରମଣ କରିପାରିବେ ନାହିଁ । ଜାପାନରେ ଅନେକ ଅଶ୍ଳୀଳ ଲିଙ୍ଗସୋନ ଛିଡ଼ାଥିଲା । ସେ ସବୁ ଅଧୁନା ବହୁପରିମାଣରେ ଲୁଗୁଇ ଦିଆହୋଇଛି । ନାନା ପ୍ରକାର ପିଠା ଇଉରୋପରେ କରାଯାଉଥିଲା ଯାହାକି ଅଶ୍ଳୀଳତାର ପରିଚାୟକ । ଫ୍ରାନ୍ସ ଦେଶରେ ବାହାଘର ବେଳେ ସ୍ତ୍ରୀ ଲୋକମାନେ ନିଜ ହାତରେ ପ୍ରନାକୃତ ପିଠା ବହନ କରି ବିବାହ ସାହାଟରେ ଖାଉଥିଲେ ।

ପ୍ରାଚୀନ ଖ୍ରୀଷ୍ଟଧର୍ମ ଏକ ପ୍ରକାର ଲିଙ୍ଗଧର୍ମ । ବିଶପର ନାରୀ ମୁଖରେ ଯଥେଷ୍ଟ ଚୁମ୍ବନ ଦେବା ଅଶ୍ଳୀଳତାର ଚିହ୍ନ ନୁହେଁ । ଜାପାନରେ ଲିଙ୍ଗପୂଜା ପୂର୍ଣ୍ଣ ହୋଇ ରହିଥିଲା । ଖ୍ରୀଷ୍ଟାବ୍ଦ ଅଷ୍ଟାଦଶ ଶତାବ୍ଦିରେ ଫ୍ରାନ୍ସ ଏବଂ ଇଟାଲୀରେ ଯୁବକ ଏବଂ ଯୁବତୀମାନେ ତାଙ୍କ ଦେହରେ, ଗଳାରେ, ମୁଣ୍ଡବାଳରେ ନାନାପ୍ରକାର ଲିଙ୍ଗଚିହ୍ନ ରଖୁଥିଲେ । ମଦୁରର ମନ୍ଦିରରେ ଲିଙ୍ଗ ପୃଷ୍ଠ ଦ୍ୱାରା ସହବାସର ପରିଚୟ ଦିଆଯାଇଅଛି । ଆୟର୍ଲାଣ୍ଡର ଗୀର୍ଜାମାନଙ୍କରେ ଅଧ କଦର୍ଯ୍ୟ ଭାବରେ ସ୍ତ୍ରୀ ମୂର୍ତ୍ତି ଗଢ଼ି ଯୋନି

ବିସ୍ତାରିତ ଭାବ ଦେଖାଇ ଦିଆଯାଇଅଛି । ପୁରାତନ ଦେଶରେ ଦେବ ମନ୍ଦିର ସମ୍ମୁଖରେ ଲିଙ୍ଗାକୃତି ସ୍ତମ୍ଭମାନ ଅଛି । ଏଲ୍‌ଡ୍ରସ୍ ହାକ୍‌ସଲି ଲେଖିଛନ୍ତି ଯେ ଖ୍ରୀଷ୍ଟିୟାନ ବଚାନ୍ତ ପ୍ରକାରେ କୁହାଯାଏ ଯେ ମୋର ଦେହ ଦ୍ୱାରା ମୁଁ ପୂଜା କରୁଅଛି । ଏହି ଦେହଦ୍ୱାରା ପୂଜା ପ୍ରକୃତରେ ଲିଙ୍ଗପୂଜା । ଏତଏବ ମନ୍ଦିର ଗାତ୍ରରେ ଲିଙ୍ଗଯୋନିର ଏହି ସଂଯୁକ୍ତ ଅଭିବ୍ୟକ୍ତି ଧର୍ମର ହିଁ ଏକ ସଂସ୍କୃତ । ଏହାଛଡ଼ା ପ୍ରାଚୀନ ଉତ୍କଳୀୟ-ମାନେ ଏହା ଭଲକରି ବୁଝିଥିଲେ ଯେ ପ୍ରକୃତିଦତ୍ତ ଏହି ଯୌନ କ୍ଷୁଧାକୁ ଏକାବେଳକେ ଗୁପ୍ତ ଦେବା ଦ୍ୱାରା ଅନେକ ସମୟରେ ଏହାର ପ୍ରକାଶ ଭଙ୍ଗୀ ନାନା ବିଭତ୍ସତା ଧାରଣ କରିଥାଏ । ଅତଏବ ସହଜ ଓ ଦ୍ୱନ୍ଦ୍ୱହୀନ ଜୀବନ ଯାପନ ପଥରେ ଏହି ବାସ୍ତବତାର ଆଶ୍ରୟ ନେବା ଦ୍ୱାରା କୌଣସି କ୍ଷତି ହୁଏନାହିଁ । ବିଗତ ପୃଥିବୀ ମହାଯୁଦ୍ଧ (୧୯୧୪-୧୮) ବେଳେ ତତ୍କାଳୀନ ଇଟାଲୀର ପ୍ରଧାନ ମନ୍ତ୍ରୀ ଜଣେ ବିଶିଷ୍ଟ ରାଜନୀତିଜ୍ଞଙ୍କୁ କହି-ଥିଲେ, "ଏଇ ଦେଖ ଏହି ଯେ ଫୁଲ ଗଛ ମୋ ହାତର ଭଙ୍ଗାରୁ ଝୁଲୁ-ଅଛି ତାହା ଶୁଭ ସୂଚନା ଏବଂ ଏଇ ଯୁଦ୍ଧରେ ଆମ୍ଭେମାନେ ଜୟୀ ହେବୁ । ସମାଜର କ୍ରମବିକାଶରେ ପ୍ରକୃତି ନିକଟେ ଲିଙ୍ଗ ଯୋନିର ଏଇ ପୂଜା ଯେ ଗୋଟିଏ ସ୍ୱାଭାବିକ ଅବସ୍ଥା ଏହା ବୁଝିବାକୁ ହେବ । ତତ୍କାଳୀନ ମାନବିକତା, ବିଶୃଙ୍ଖଳତା ବା କଦର୍ଯ୍ୟତା ଦୋଷରେ ଦୁଷ୍ଟ ହୋଇନାହିଁ । ଜନବୃଦ୍ଧି ବା ବଂଶବୃଦ୍ଧିର ଆକାଂକ୍ଷା ସେ ସମ-ୟରେ ଲୋକମାନଙ୍କୁ ଲିଙ୍ଗ ଯୋନି ପୂଜାରେ ପ୍ରବର୍ତ୍ତାଇ ଥିଲା ଏବଂ ଦେବତାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଯେଉଁ ସବୁ କାର୍ଯ୍ୟ କରାଯାଉ-ଥିଲା, ତାହା ବର୍ତ୍ତମାନ ଦୃଷ୍ଟିରେ ଅଶ୍ଳୀଳ ଅନୁମିତ ହେଲେ ମଧ୍ୟ ସେ ସମୟ ଦୃଷ୍ଟିରେ ଅଶ୍ଳୀଳ ନଥିଲା । ବ୍ରୁଟ୍‌ଲେଜ୍ ପୁସ୍ତକ ବିକ୍ରେତାଙ୍କ ଦ୍ୱାରା ପ୍ରକାଶିତ A Bibliography of Sex Rites and Customs ଅର୍ଥାତ୍ ଯୌନ ଆଚାର ଓ ବ୍ୟବହାର ବିଷୟକ ପୁସ୍ତକ ସୂଚୀ ଅତି ଉପାଦେୟ । ଏଥିରେ ୯୦୦୦ଟି ବିଷୟ ଉଲ୍ଲେଖିତ ଅଛି । ଯୌନ ବ୍ୟାପାରେ ଜୀବନର ଜନ୍ମ ଓ ଜୀବନର ଉପଲବ୍ଧି କରି ଯୌନପୂଜାକୁ ନାନା ଭଙ୍ଗୀରେ ମନ୍ଦିର ଗାତ୍ରରେ ଯୌନକ୍ରିୟାରତ ମୂର୍ତ୍ତି ସାହାଯ୍ୟରେ ପ୍ରକାଶ କରି

ଯାଉଥିଲା । ଏହାଦ୍ୱାରା ଜୀବନର ଓ ଯୌବନର ପ୍ରସନ୍ନତା ବୃଦ୍ଧି ପାଇବାର ଚେଷ୍ଟା କରାଯାଉଥିଲା । ଜୀବନ ଗୃହ, ଯୌବନ ଗୃହ ଶିଳ୍ପକଳାର ଓ ଶିଳ୍ପକଳାର ଜୀବନ ଯୌବନର ଅଭିବ୍ୟକ୍ତି ପାଇଁ ଉତ୍ସ ମୂଳ । କୋଣାର୍କର ସୂର୍ଯ୍ୟ ମନ୍ଦିର ଏହି ଉଦାହରଣ ମାତ୍ର ଏକ ସମୟରେ ମଧ୍ୟ ମନ୍ଦିରମାନଙ୍କ ଆସନରେ ଅଭିଷିକ୍ତ କରାଯାଉଥିଲା । ମନ୍ଦିର ସଭ୍ୟତାରେ ଗୃହୀର ଗୃହ ନିର୍ମାଣର କଳ୍ପନା ମୂର୍ତ୍ତିରୁ ସଂଗ୍ରହ କରାଯାଇ ପଦ୍ଧତିରୁ ହେଉଥିଲା ଏବଂ ଶିଳ୍ପ ଦେଉଳର ପୂର୍ବ ପାର୍ଶ୍ୱରେ ଗୃହୀମାନେ ଏମନ୍ତ ନିରନ୍ତର ଓ ପ୍ରଗାଢ଼ ସଦ୍‌ଭାବ ରଖୁଥିଲେ ଯେ ସେହି ସୂକ୍ଷ୍ମ ମାନଙ୍କୁ ସେମାନେ ଅନୁମାନ କରୁଥିଲେ ଯେ ସେହି ପଦ୍ଧତିରେ ଗୃହ ବୃଦ୍ଧି ହେବ । ଏପରିକି କୃଷିରେ ବୀଜ ବପନ କରିବାରେ [illegible] ଲୋକଙ୍କୁ ଠିକ୍ ସେହି ସମୟରେ ପ୍ରାଣୀ ସହବାସ କରିବା ପାଇଁ ନିଯୁକ୍ତ କରି ଯାଉଥିଲା । ଏହି ସବୁର ପ୍ରତିକ୍ରିୟା ସ୍ୱରୂପ ପ୍ରାଚୀନ-ମାନେ ମନ୍ଦିର ଗାତ୍ରରେ ଲିଙ୍ଗ ଯୋନିର ମୂର୍ତ୍ତି ସ୍ଥାପନା କରି [illegible] [illegible] ତଥା ଜାତୀୟ ଜୀବନର ସୁଖ ସୌଭାଗ୍ୟ ବୃଦ୍ଧି କରିବା ନିମନ୍ତେ ମନ୍ଦିର ଗାତ୍ରରେ ଉତ୍କୃଷ୍ଟ ମୂର୍ତ୍ତିମାନ ସ୍ଥାପନା କରୁଥିଲେ । ଏହା-ଦ୍ୱାରା ବିଶ୍ୱାସର ପରିଚୟ ମିଳେ, ବ୍ୟଭିଚାର ନୁହେଁ । ଖ୍ରୀଷ୍ଟିଆନ ଜଗତରେ ବହୁକାଳ ପର୍ଯ୍ୟନ୍ତ ସହବାସ ଦାସ ବାନ୍ଦୀମାନଙ୍କୁ କେବଳ ପୌରୋ-ହିତ୍ୟରେ ନିଯୁକ୍ତ କରାଯାଉଥିଲା । ଭାରତର(?) ଓ ଭଗିନୀଙ୍କରେ ଲିଙ୍ଗ ମୂର୍ତ୍ତିମାନ ଖଚିତ ହେଉଥିଲା । ଏହା ପବିତ୍ରତା ନୁହେଁ ? ଏହା ଅଶ୍ଳୀଳତା ନୁହେଁ ? ଚୀନ ଦେଶରେ ଯେଉଁ ବୁଦ୍ଧମନ୍ଦିରରେ ଏବେ ବି ଲିଙ୍ଗ ପୂଜା ହୁଏ ଏବଂ ମୁସଲମାନ ରମଣୀମାନେ ଅତିଭକ୍ତିରେ ସାଧୁ ଲୋକଙ୍କର ଲିଙ୍ଗକୁ ଚୁମ୍ବନ କରିଥାନ୍ତି । ସେମାନଙ୍କର ପବିତ୍ରାତ୍ମାଙ୍କ ଅନ୍ତରରେ ଯେଉଁ ସଦ୍‌ଭାବ ତାହା ମଧ୍ୟ ଏହି ଯୌନ ବ୍ୟଭିଚାରର ରହସ୍ୟ । ସେ ସମୟର ଦୃଷ୍ଟିରେ ଏହା ପବିତ୍ର କାର୍ଯ୍ୟ ଓ ବର୍ତ୍ତମାନର ଦୃଷ୍ଟିରେ ଏହା ଅପବିତ୍ର ବ୍ୟଭିଚାର । ଯୌନକ୍ରିୟାର ମନ୍ଦିର ଗାତ୍ରରେ ଏହି ପ୍ରକାଶ ଅଭିବ୍ୟକ୍ତିର ଅନ୍ୟ ଗୋଟିଏ କାରଣ ଅଛି । ସେ କାରଣଟି ଏହି ଭଲ ଭଲ ଯୁବକ-ରମଣୀ ଯୌନକ୍ରିୟାର ପୂର୍ଣ୍ଣ ଚରିତାର୍ଥତା ପାଇଁ [illegible]

ପ୍ରୟୋଜନୀୟ ତାହା ନିଶ୍ଚିତ ହେବେ ପ୍ରସ୍ତର ମୂର୍ତ୍ତିରେ ଅର୍ଥାତ ସ୍ଥୂଳ ଦେହରେ ବ୍ୟକ୍ତ କରି ଯାଇଅଛି । ଯେପରିକି ଜିଜ୍ଞାସୁ ଓ ଅନ୍ୱେଷୀ ବ୍ୟକ୍ତି ତାହା ସହଜରେ ବୁଝି ପାରିବ । କେହି କେହି ଯୁକ୍ତି କରନ୍ତି ଯେ ଏହାହିଁ ଉଦ୍ଦେଶ୍ୟ ହୋଇ ତେବେ ମନ୍ଦିରର ଏତେ ଉପରେ ଏବଂ ଅନେକ ସମୟରେ ଅସୁବିଧା ଜନକ ଜାଗାରେ କାହିଁକି ସେସବୁ ଯୁଗଳ କ୍ରିୟାଶୀଳ ମୂର୍ତ୍ତି ସ୍ଥାପନ କରାଯାଇଛି ? ଏହାର ଉତ୍ତରରେ ଏତିକି କୁହାଯାଇ-ପାରେ ଯେ ଯେଉଁ ବସ୍ତୁକୁ ଏତେ ମୂଲ୍ୟବାନ ଓ ଆଦରଣୀୟ ବୋଲି ମନେ କରାଯାଏ ତାହା ପାଇଁ ଟିକିଏ କଷ୍ଟ ପାଇବାର ସାର୍ଥକତା ଯଥେଷ୍ଟ ଅଛି । ସେହେତୁ ମନୋରଞ୍ଜନ ଦୃଷ୍ଟିରୁ ଦେଖିବାକୁ ଗଲେ ଏହାହିଁ ହେବା ଉଚିତ । ଯାହା ମୂଲ୍ୟବାନ, ଯାହା ଆଦରଣୀୟ ତାହାକୁ ଟିକିଏ ଦୂରେ ଏବଂ ଟିକିଏ ରହସ୍ୟମୟ କରି ରଖିବା ଉଚିତ । ଅଧିକ ସାଧାରଣ ଲୋକଙ୍କ ଚକ୍ଷୁର ଟିକିଏ ଅନ୍ତରାଳରେ ରହିବା ମଧ୍ୟ ବାଞ୍ଛନୀୟ ।

ଏହାଛଡ଼ା ଦେଶରେ ଯେତେବେଳେ ପ୍ରଚୁର ଲୋକକ୍ଷୟ ହୁଏ ସେତେବେଳେ ଲୋକ ବୃଦ୍ଧି ପାଇଁ ଯୌନ କ୍ରିୟା ବିଶେଷ ଆବଶ୍ୟକ ହୋଇପଡ଼େ । ତାହା ନ ହେଲେ ଲୋକ ସଂଖ୍ୟା ଶୀଘ୍ର ଶୀଘ୍ର ବୃଦ୍ଧି ପାଇବ ନାହିଁ । ଉତ୍କଳର କଳିଙ୍ଗ ଯୁଦ୍ଧରେ (ଅଶୋକଙ୍କ ସହିତ)ରେ ଅସଂଖ୍ୟ ଲୋକକ୍ଷୟ ହୋଇଥିଲା । ତାହା ଛଡ଼ା ସବୁ ସମୟରେ ଉତ୍କଳୀୟ ଯୋଦ୍ଧାମାନେ ଯୁଦ୍ଧରେ ବ୍ୟାପୃତ ଥିଲେ । ସେଥିରେ ନିଶ୍ଚୟ ଲୋକକ୍ଷୟ ହେଉଥିଲା । ଅତଏବ ଲୋକ ବୃଦ୍ଧି ପାଇ, ନାନା ପ୍ରକାର ଭଙ୍ଗୀରେ ଯୌନ କ୍ରୀଡ଼ାର ଆୟୋଜନ (ଅଥଚ ଧାର୍ମିକ ପରିସ୍ଥିତି ମଧ୍ୟରେ ରହି) କରାଯାଉଥିଲା । ଏହାହିଁ ଉତ୍କଳର ମନ୍ଦିର ଗାତ୍ରରେ ଯୌନକ୍ରିୟାର ଏତେ ସମାବେଶ କାହିଁକି ହୋଇଛି ତାହାର ଗୋଟିଏ ବଡ଼ର ସରଣୀ ଦର୍ଶାଉଛି ।

ଦୁର୍ଭିକ୍ଷରେ, ମହାମାରୀରେ ମଧ୍ୟ ଅନେକ ଲୋକକ୍ଷୟ ହେଲେ ବେଳେ ଯୌନକ୍ରୀଡ଼ାର ଉତ୍କର୍ଷର ଏକାନ୍ତ ଆବଶ୍ୟକ ନୁହେଁ କି ? ସଚେତ ବୈଜ୍ଞାନିକ ଓ ନୃତତ୍ତ୍ୱବିଦ୍‌ମାନେ ଏହି କଥାର ଯଥାର୍ଥ୍ୟ ,ଭଲଭାବେ ହୃଦୟଙ୍ଗମ କରିପାରିବେ ।

ଶ୍ରୀରବୀନ୍ଦ୍ରନାଥ ଠାକୁର ତାଙ୍କର "ଭୁବନେଶ୍ୱର ମନ୍ଦିର" ପ୍ରବନ୍ଧରେ (ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଦ୍ୱାରା ଓଡ଼ିଆରେ ଅନୁବାଦିତ— ସହକାର ୬ଷ୍ଠ ଭାଗ ପୌଷ ୧୩୩୦, ନବମ ସଂଖ୍ୟା ) ଲେଖିଅଛନ୍ତି" ଦେଖିଲି, ମନ୍ଦିର ଭିତର ସର୍ବାଙ୍ଗରେ ଛବି ଖୋଲା ହୋଇଅଛି । କେଉଁଠାରେ ଅବକାଶ ମାତ୍ର ନାହିଁ । ଯେଉଁଠାରେ ଅକ୍ଷିପଡ଼େ ଏବ ଯେଉଁଠାରେ ଅକ୍ଷି ପଡ଼େନାହିଁ ସବୁଠି ହିଁ ଶିଳ୍ପୀର ନିରଳସ ଚେଷ୍ଟା କାର୍ଯ୍ୟ କରୁଅଛି । ଛବିଗୁଡ଼ିକ ବିଶେଷ ଭାବରେ ପୌରାଣିକ ଛବି ନୁହେଁ, ଦଶଅବତାରର ଲୀଳା ବା ସ୍ୱର୍ଗଲୋକର ଦେବକାହାଣୀ ଯେ ଦେବାଳୟ ଗାତ୍ରରେ ଲିଖିତ ହୋଇଅଛି ତାହା କହି ପାରୁନାହିଁ । ମନୁଷ୍ୟର ସାନବଡ଼ ଭଲ ମନ୍ଦ, ପ୍ରତିଦିନର ଘଟଣା — ତାହାର ଖେଳ ଓ କାର୍ଯ୍ୟ; ଯୁଦ୍ଧ ଓ ଶାନ୍ତି ଘର ଏବଂ ବାହାର ବିଚିତ୍ର ଅଲେଖ୍ୟଦ୍ୱାରା ମନ୍ଦିରକୁ ବେଷ୍ଟନ କରୁଅଛି । ଏହି ଛବି ଗୁଡ଼ିକ ମଧ୍ୟରେ ଅଉ କୌଣସି ଉଦ୍ଦେଶ୍ୟ ଦେଖୁନା, କେବଳ ଏ ସଂସାର ଯେପରି ଭାବରେ ଚାଲିଅଛି ତାହାହିଁ ଅଙ୍କନ କରିବାର ଚେଷ୍ଟା । ସୁତରାଂ ସେ ଶ୍ରେଣୀ ଭିତରେ ଏପରି ଅନେକ ଥିଗିରେ ଦିଶେ ଯାହା ଦେବାଳୟର ଅଙ୍କନ ଯୋଗ୍ୟ ବୋଲି ହଠାତ୍ ମନେ ହୁଏ ନାହିଁ । ଏଥିରେ ବଛାବଛି କିଛିନାହିଁ — ତୁଚ୍ଛ ଏବଂ ମହତ ଗୋପନୀୟ ଏବଂ ଘୋଷଣୀୟ ସମସ୍ତହିଁ ଅଛି । କୌଣସି ଗୀର୍ଜା ଭିତରକୁ ଯାଇ ଯଦି ଦେଖନ୍ତି, ସେଠାରେ କାନ୍ଥରେ ଇଂରାଜ ସମାଜର ପ୍ରତିଦିନର ଛବି ଝୁଲୁଅଛି । କେହି ଖାନା ଖାଉଛି, କେହି ଡଗ୍ କାର୍ଟ (କୁକୁରଗାଡ଼ି) ହାଙ୍କାଉଛି କେହୁ ହୁଇଷ୍ଟ ଖେଳୁଛି, କେହି ପିଆନୋ ବଜାଉଛି, କେହି ସଙ୍ଗୀନୀକୁ ବାହୁ ପାଶରେ ବେଷ୍ଟନ କରି ପଲ୍‌କା ନାଚୁଅଛି, ତାହାହେଲେ ହତବୁଦ୍ଧି ହୋଇ ହୁଏତ ବୋଧହୁଏ ସ୍ୱପ୍ନ ଦେଖୁଅଛନ୍ତି— କାରଣ ଗୀର୍ଜା ସଂସାରକୁ ସର୍ବତୋଭାବରେ ମୁଣ୍ଡନ କରି ପକାଇ ଅପଣାର ସ୍ୱର୍ଗୀୟତା ପ୍ରକାଶ କରି-ବାକୁ ଚେଷ୍ଟାକରେ । ମନୁଷ୍ୟ ସେଠାରେ ଲୋକାଳୟର ବାହାରକୁ ଅପସ-

ତାହା ସେପରି ଯଥା ସମ୍ଭବ ମର୍ତ୍ତ୍ୟ-ସ୍ପର୍ଶ ବର୍ଜିତ ଦେବଲୋକର ଆଦର୍ଶ । ସେଥିପାଇଁ ଭୁବନେଶ୍ୱର ମନ୍ଦିରର ଚିତ୍ରାବଳୀରେ ପ୍ରଥମେ ମନରେ ବାସ୍ତବର ଆଘାତ ଲାଗେ ସ୍ୱଭାବତଃ ଦୃଷ୍ଟ ଲାଗନ୍ତା ନାହିଁ । କିନ୍ତୁ ଅନେକଙ୍କ ଶିକ୍ଷାରେ ଆମ୍ଭେମାନେ ସ୍ୱର୍ଗମର୍ତ୍ତ୍ୟକୁ ମନେ ମନେ ଭାଗକରି ରଖିଅଛୁ । ସର୍ବଦା ହିଁ ସନ୍ତର୍ପଣରେ ଥିଲେ, ଡାଳେ ଦେବ ଆଦର୍ଶରେ ମାନବତ୍ୱବର କୌଣସି ଦାଗ ପଡ଼େ, ଡାଳେ ଦେବ ମାନବ ମଧ୍ୟରେ ଯେଉଁ ପରମ ପର୍ବତ, ସୁଦୂର ବ୍ୟବଧାନ, ସମୁଦ୍ର, ମନୁଷ୍ୟ ତାହା ଲେଶ ମାତ୍ର ଲଙ୍ଘନ କରେ । ଏଠାରେ ମନୁଷ୍ୟ ଦେବତାର ଏତା କେବଳକେ ସେପରି ଶରୀରର ଉପରେ ଅଧି ପଡ଼ିଅଛି – ସେ ମଧ୍ୟ ସେ ଧୂଳି ଝାଡ଼ି ଆସିଅଛି ତାହା ନୁହେଁ । ଗତଶୀଳ, କର୍ମରତ, ଧୂଳିଲିପ୍ତ ସଂସାରର ପ୍ରତିକୃତି କାଂସ୍ୟଦ୍ୱୋତରେ ସମ୍ଭୂତ ହୋଇ ଉଚ୍ଚ ଦେବତାର ପ୍ରତିମୂର୍ତ୍ତିକୁ ଅଙ୍କନ କରି ରହିଅଛି ।

କିନ୍ତୁ ଭୁବନେଶ୍ୱରର ମନ୍ଦିରରେ ଅଦ୍ଭୁତ ସେପରି ଟିକିଏ ବିଶେଷତ୍ୱ ଅଛି । ଭିତରେ ତାର ଉପମା ମଧ୍ୟରେ ନିଭୃତ ଅରଣ୍ୟର ଏକାନ୍ତ ନିର୍ଜନତାର ସେପରି ଏକାନ୍ତ ରୂପରେ ପଞ୍ଚମୁଖୀ ଲିଙ୍ଗଟିଏ ହୋଇଯାଇଛି । ଏହାପରି ଉପମା ଦୃଷ୍ଟିରେ ପ୍ରତ୍ୟେକ ଶୀତାତ୍ମା ହୃଦୟରେ ସଂଯୁକ୍ତ । ଏଥିରେ ଯେ ଧ୍ୟାନରତ ମନକୁ ଅଧେ ସେଥିରେ ଦେଖିତାକୁ ପାଉ ଯେ, ଯେ-ମୂର୍ତ୍ତି ହେଉଛ କରୁଅଛି, ଭ୍ରମଣ କରୁଅଛି, ସେହି-ମୂର୍ତ୍ତି ମଧ୍ୟରେ ଶାନ୍ତଂ ଶିବ ଅଦ୍ୱୈତଂ ମୁଖ ଭାବରେ ଅବସ୍ଥିତ ।

ଶ୍ରୀଦୟାନିଧି ମିଶ୍ର ଏମ୍ ଏ, ଙ୍କ "ଉତ୍କଳ ସାହିତ୍ୟ" ପ୍ରବନ୍ଧରେ (ସତ୍ୟବାଦୀ ଜୟନ୍ତୀ, ମାର୍ଗଶୀର ୧୩୩୦, ୮ମ ସଂଖ୍ୟା ) ଲେଖିଅଛନ୍ତି-ବଙ୍ଗଦେଶରେ ବିଦ୍ୟାପତି, ଚଣ୍ଡୀଦାସ ଭାରତଚନ୍ଦ୍ର ଓ ରବୀନ୍ଦ୍ର ନାଥ ପ୍ରଭୃତି ପୁରାତନ ଓ ଅଧୁନାତନ ଲେଖକ ମାନଙ୍କ ଲେଖାରେ ଅଶ୍ଳୀଳ ଭାବ ଅଛି କିନାହିଁ। ଏହି ବଙ୍ଗୀୟ କବିମାନଙ୍କ ଅଶ୍ଳୀଳତା ସମ୍ବନ୍ଧରେ ମଜୁମଦାର ମହାଶୟ (ବିଜୟଚନ୍ଦ୍ର) କୌଣସି ସ୍ୱାଧୀନ ଅଭିମତ ବ୍ୟକ୍ତ କରି ଅଛନ୍ତି କି ? ଉପେନ୍ଦ୍ର ଭଞ୍ଜଙ୍କ ଲେଖା ଗୁଡ଼ିକ ଓଡ଼ିଆ ସାହିତ୍ୟର ଗୋଟିଏ ବିଶେଷ Type. ଏହି ଟାଇପକୁ (Type) ବାଦ୍ ଦେଇ ବିଜୟବାବୁ ଓଡ଼ିଆ ସାହିତ୍ୟ

Typical Selections କହନ୍ତେ କାହାକୁ ? ଏହି Typical Selectionର ମୁଖବନ୍ଧରେ ବିଜୟବାବୁ ଓଡ଼ିଆ ଜାତି ଓ ଓଡ଼ିଆ ସାହିତ୍ୟ ବିରୁଦ୍ଧରେ ଯାହା ଲେଖିଅଛନ୍ତି, ତହିଁର ତୀବ୍ର ପ୍ରତିବାଦ ଆଜ ପର୍ଯ୍ୟନ୍ତ ବାହାରି ନାହିଁ ।

ନୂତନ ଯୁଗର ଆରମ୍ଭ ଠାରୁ ନୂତନ ସାହିତ୍ୟର ସମର୍ଥକ ଅମ୍ଭେମାନେ ଉତ୍କଳର ଉପେନ୍ଦ୍ର ଭଞ୍ଜ ଆଦି ପ୍ରାଚୀନ ଲେଖକଙ୍କ ଲେଖାକୁ ଅଶ୍ଳୀଳ କହିବାକୁ ଲାଗିଛୁ—ଅବଶ୍ୟ ସମସ୍ତେ, ନୁହନ୍ତି—ସୁଦ୍ଧି ଅନେକଙ୍କର ମତ ପରିବର୍ତ୍ତିତ ହେଉଛି । କିନ୍ତୁ ମୁଁ ପାଗେଁ, ଅସ୍କରୱାଇଲ୍ଡ ପ୍ରଭୃତିଙ୍କ ଲେଖାରେ, ଗଲ୍‌ସରେ କଣ କମ୍ ଅଶ୍ଳୀଳତା ରହିଛି ? ସେକ୍ସପିଅର, ବାଇରନ, କିଟସ୍ ପ୍ରଭୃତିଙ୍କ ଲେଖାରେ ମଧ୍ୟ ଅଶ୍ଳୀଳତା ରହିଛି । ତାକୁ କେହି କେହି ଚନ୍ଦ୍ରରେ କଳଙ୍କ ଥିଲା ପରି ଧରିବା ନୁହେଁ ବୋଲି କହୁଛନ୍ତି । ଏ ପୁରୁଣା "ଇନ୍ଦ୍ରଧନୁ" "ବିଜୁଳି" ଯୁଗର ଯୁକ୍ତି । ସେତେବେଳେ ଲାଲ ରାମନାରାୟଣ ରାୟ ଏ ଯୁକ୍ତି ବାଢ଼ିଥିଲେ ଏବଂ ରାଧାନାଥରାୟ ମଧ୍ୟ ତାଙ୍କର ସମର୍ଥନ କରୁଥିଲେ । ମଧୁସୂଦନ ରାଓ କିନ୍ତୁ ଏହି ଯୁକ୍ତିର ବିପକ୍ଷରେ ଥିଲେ ଏବଂ ଏତେଦୂର ପର୍ଯ୍ୟନ୍ତ ଯାଇଥିଲେ ଯେ ସେ ଉପେନ୍ଦ୍ରଭଞ୍ଜଙ୍କ ଲେଖାକୁ ସମର୍ଥନ କରୁଥିଲେ, ଏହାହିଁ ଆଶ୍ଚର୍ଯ୍ୟ । ରାଧାନାଥଙ୍କ ଲେଖାରେ ଶୃଙ୍ଗାର ରସ ପୂରି ରହିଅଛି— ସେ ହେଲେ ଭଞ୍ଜ ବିରୋଧୀ ଓ ଭକ୍ତକବି ମଧୁସୂଦନ ହେଲେ ଭଞ୍ଜ ସପକ୍ଷ—ଏହାହିଁ ଅତି ଆଶ୍ଚର୍ଯ୍ୟଜନକ । କିମାଶ୍ଚର୍ଯ୍ୟ ଅତଃ ପରଂ ।

ପ୍ରାଚୀନ ରୀତି ଅନୁସରଣକାରୀ ଇନ୍ଦୁମତୀ ଲେଖକ ଶ୍ରୀ ଗୋଲକ ଚନ୍ଦ୍ର ପ୍ରଧାନ ପ୍ରାଚୀନ ସାହିତ୍ୟ ଆଲୋଚନାରେ ଉତ୍କଳ ସାହିତ୍ୟ ସମାଜର ସାହିତ୍ୟସପ୍ତାହରେ (୧୯୪୪, ଜାଗରଣ, ସୁବର୍ଣ୍ଣ ସାହିତ୍ୟ-ସପ୍ତାହ ସଂଖ୍ୟା ଦ୍ରଷ୍ଟବ୍ୟ) ଲେଖିଛନ୍ତି—"ଆଦିରସ ପ୍ରଧାନ କାବ୍ୟମାନ ଦୋଷାବହ ହେବାର ବିଷୟ ନୁହନ୍ତି, କାରଣ ଅଳଙ୍କାରିକମାନେ ଶୃଙ୍ଗାରରସ ପ୍ରଧାନ ରସ ବୋଲି ସ୍ଥିର କରି ଅଛନ୍ତି । ଶୃଙ୍ଗାର ରସ

ପର ଅନ୍ୟ କୌଣସି ରସ ଅତି ସୁକୁମାର ନୁହେଁ ଓ ସମସ୍ତଙ୍କ ହୃଦ-ୟରେ ଅହ୍ଲାଦ ଦିଏ ନାହିଁ ।

× × × × ×

ଶୃଙ୍ଗାର ରସ ବର୍ଣ୍ଣନ କରୁ କରୁ କଳାର ପ୍ରଧାନ ଭୂଷଣ ସତ୍ୟ ଓ ସୁରୁଚିକୁ ରକ୍ଷା କରିବାକୁ ଯାଇ ଉତ୍କଳର ପ୍ରାଚୀନ କବି-ମାନେ କେବଳ କାହିଁକି ଜୟଦେବାଦି ସଂସ୍କୃତ କବିମାନେ ଓ ସେକ୍ସ-ପିଅର, ବାଇରନ୍ ପ୍ରଭୃତି ପାଶ୍ଚାତ୍ୟ କବିମାନେ ଏ ସତ୍ୟର ଅପଳାପ କରି ଅଶ୍ଳୀଳ ବର୍ଣ୍ଣନ କରିଅଛନ୍ତି । ତେଣୁ ସେମାନେ କିମ୍ବା ସେମାନଙ୍କ କାବ୍ୟ ଦୂଷଣୀୟ ନୁହେଁ । ବାସ୍ତବରେ ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଅଭିମନ୍ୟୁ, ଭଞ୍ଜ ପ୍ରଭୃତି ପ୍ରାଚୀନ କବିମାନେ ସେମାନଙ୍କ ସହଜଲବ୍ଧ ବୁଦ୍ଧି ଦ୍ୱାରା ପ୍ରଣୟାନୁଭୂତିର ଯେଉଁ ମଧୁର ଚିତ୍ରମାନ ଦେଇଅଛନ୍ତି ତାହାହିଁ କେବଳ ସେହିମାନଙ୍କ ଲେଖାରେ ସମ୍ଭବ । ସେହିମାନେହିଁ ବିଶ୍ୱ ଅନୁଭୂତିର ପ୍ରତିନିଧି ରୂପେ ଚିର ପୂଜ୍ୟ । ” ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ (ସହକାର, ଏକାଦଶସଂଖ୍ୟା ତ୍ରୟୋବିଂଶ ଭାଗ ୪୭୨ପୃଷ୍ଠା) ଲେଖିଛନ୍ତି, “ଉପେନ୍ଦ୍ରଭଞ୍ଜଙ୍କର କାବ୍ୟର ଅଶ୍ଳୀଳତା ଦୋଷ ଦେଖି କେହି ଯେପରି ମନେ କରିବେ ନାହିଁ ଯେ ନାୟକ ନାୟିକା ଚରିତ୍ର ଚିତ୍ରଣରେ ତାଙ୍କର ଆଦର୍ଶ ନ ଥିଲା । ଆଧୁନିକ ଉପନ୍ୟାସରେ ନାୟକ ନାୟିକା ଦାମ୍ପତ୍ୟ ଜୀବନର ଯେଉଁ ଅବିଚ୍ଛେଦତାର ଗନ୍ଧ ମିଳେ ଉପେନ୍ଦ୍ରଭଞ୍ଜଙ୍କ ଲେଖାରେ ତାହାର ଅଭାବ ଦେଖା ନାହିଁ ।”

ଶ୍ରୀଯୁକ୍ତ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ତାଙ୍କର ଭୂମିକାରେ (ଶ୍ରୀଗି-ରେଖା କାବ୍ୟ ଦ୍ରଷ୍ଟବ୍ୟ) ଲେଖିଛନ୍ତି “ଉତ୍କଳର ଶୃଙ୍ଗାରରସ ପ୍ରଧାନ କାବ୍ୟ କବିତା ଓ ଉତ୍କଳ ଶୈଳୀର ଶୃଙ୍ଗାର ଗୀତ ଅସାଧୁ ମୂର୍ଖ-ମାନଙ୍କୁ ଅଶ୍ଳୀଳ କହିବା ଏ ଦେଶର ଲେଖକଙ୍କର ଗୋଟିଏ ରୀତି ହୋଇ ଗଲାଣି । ଏହା ଦାସ ମନୋବୃତ୍ତିର ଗୋଟିଏ ଚିହ୍ନ । କିଛି ଚିନ୍ତା ନ କରି ଅନ୍ୟ ଯେଣେ କହୁଛନ୍ତି ସେଥିରେ ଯୋଗଦେବା ଧର୍ମର ଉଚିତ ନୁହେଁ । ପାଶ୍ଚାତ୍ୟଦେଶମାନଙ୍କରେ ପ୍ରଚଳିତ ବଲ୍‌ଡାନ୍ସିଂ ବା ସ୍ତ୍ରୀ ପୁରୁଷଙ୍କ ହସ୍ତ ଓଷ୍ଠ

ନୃତ୍ୟ ନିଶ୍ଚୟ ଓଡ଼ିଆ ଆଖିରେ ଅଶ୍ଳୀଳ । କିନ୍ତୁ ଅନୁକରଣପ୍ରିୟ ଜାତି ପକ୍ଷେ ଅନୁଚିନ୍ତା ନିତାନ୍ତ ସ୍ୱାଭାବିକ । ଆଜି ଓଡ଼ିଆ ଯେ ବିଦେଶୀଙ୍କ ସହିତ ସ୍ୱର ମିଶାଇ ନିଜର ଅତୀତ ଆଦର୍ଶକୁ ହେୟ ଓ ତୁଚ୍ଛ ମନେ କରୁଅଛି ତହିଁରୁ ଏତିକିମାତ୍ର ପ୍ରମାଣିତ ହେଉଅଛି ଯେ ଓଡ଼ିଆ ଆଜି ପରାଧୀନ ଓ ପତିତ । ଯାହାକୁ ଅଶ୍ଳୀଳ କୁହାଯାଉଅଛି ତହିଁରେ ଯେଉଁ ସୌନ୍ଦର୍ଯ୍ୟ ଅଛି ତାହାର ବିକାରହୀନ ଆସ୍ୱାଦନ ଓ ଉପଭୋଗ ନିମନ୍ତେ ଓଡ଼ିଆଙ୍କୁ ପୁଣି ବୀର ଓ କଳାବିତ୍ ହେବା ପ୍ରୟୋଜନ । ଆମ୍ଭର ଆଶା ଅତୀତର ଉଦ୍‌ବୋଧନ ସହିତ ଓଡ଼ିଆ ପ୍ରାଣର ପୂର୍ବ ଓଜଃ ଫେରିଆସିବ ଓ ଅଶ୍ଳୀଳତାର ପରବର୍ତ୍ତିକାରୁ ମୁକ୍ତ ହୋଇ ଓଡ଼ିଆ ପୁଣି ପ୍ରେମର କଣ୍ଠଉଦ୍‌ଗୀତ ପ୍ରାଣପୂର୍ଣ୍ଣ ଉଲ୍ଲାସରେ ଗାଇବ ।”

( – ୩ – )

The God-idea of the Ancients or Sex in Religion by Eliza Burt Gamble ( G. P. Partner's Sons, London 1897 ) ଗ୍ରନ୍ଥ ପାଠକଲେ ଜଣାଯାଏ ଯେ ପ୍ରକୃତରେ ଯେ କେବଳ ଏହି ଯୌନଲିଙ୍ଗ ରହିଛି ତାହାନୁହେଁ ଧର୍ମରେ ମଧ୍ୟ, ଈଶ୍ୱରସୃଷ୍ଟିରେ ମଧ୍ୟ । ଏଥିପାଇଁ ଆମ୍ଭମାନଙ୍କର ଧର୍ମଶାସ୍ତ୍ରରେ ଯୌନ ବିଜ୍ଞାନ ବିଷୟ କଥା ଅନେକ ଲେଖା ହୋଇଅଛି । ଏହା ଦ୍ୱାରା ଆମ ଧର୍ମଶାସ୍ତ୍ର କଳୁଷିତ ହୋଇଯାଇନାହିଁ । ଅଶ୍ଳୀଳତା ଯଦି କୁହାଯାଏ ତାହାହେଲେ ଆମର ମାନବ ଜନ୍ମକ୍ରିୟାହିଁ ଅଶ୍ଳୀଳ । ସେ ଭଗବାନଙ୍କ ସମସ୍ତ ସୃଷ୍ଟି ବା ପ୍ରଜନନ କ୍ରିୟାହିଁ ଅଶ୍ଳୀଳ । ପୁନଶ୍ଚ ଯଦି କୁହାଯାଏ ଏହି କ୍ରିୟା ଗୁପ୍ତ ଭାବରେ ରଖିବା ଉଚିତ ତାହାହେଲେ ପ୍ରକୃତିରେ ସର୍ବତ୍ର ଏହା ପ୍ରକାଶ୍ୟ ଭାବରେ ହେଉଅଛି । ମାନବ କେବଳ ତାହାର ନାନାପ୍ରକାର ମାନସିକ ଜଟିଳତା ଯୋଗୁ କେତେ ଗୁଡ଼ିଏ କାର୍ଯ୍ୟ ବା ବ୍ୟବହାରକୁ ଗୁପ୍ତ କରି ରଖୁଅଛି । ଯୌନ ସମ୍ବନ୍ଧରେ ଯଥାର୍ଥ ଚିନ୍ତାକରିବା କଣ ପାପ ? ନା ମହାପାପ ? ପୁଣି ଏହି ଯୌନ ସଂଯୋଗର ନାନାବିଧ ଅଛି, ଯାହାର ଆଲୋଚନା ନିତାନ୍ତ ହେୟ ନୁହେଁ । କାରଣ ଏହାର ଉପରେ ସ୍ୱାମୀ ଓ ସ୍ତ୍ରୀର ନୈତିକ ଓ ମାନସିକ ଜୀବନର ସୁସ୍ଥତା ମଧ୍ୟ ନିର୍ଭର କରେ ।

ମନୋମୋହନ ଗାଙ୍ଗୁଲି ତଥା ଅନ୍ୟାନ୍ୟ ବୈଦେଶିକ ତଥାକଥିତ ପଣ୍ଡିତମାନେ ଯେ ଓଡ଼ିଆ କାରୁକୁ ଅତି ଜଘନ୍ୟ, କୁତ୍ସିତ, ପାପାଚାରୀ, ବ୍ୟଭିଚାରପୂର୍ଣ୍ଣ ବୋଲି ଜାହିର କରିଛନ୍ତି ତାହା ଠିକ୍ ନୁହେଁ । ପାପ, ବ୍ୟଭି-ଚାର ତ ମନର ଭାବରେ ନିହିତ ଥାଇ ଅଧିକ ହୋଇପାରେ । ଯେଉଁମାନେ ଦ୍ରଷ୍ଟା, ଯେଉଁମାନେ ବ୍ୟଭିଚାରୀ ସେମାନେ ପାପାଚାରୀ ନା ଯେଉଁମାନେ ଶିଳ୍ପୀ ସେମାନେ ପାପାଚାରୀ ? ଶିଳ୍ପୀ ନିକଟରେ ତାର ସୃଷ୍ଟି କଳାହିଁ ଏକମାତ୍ର ଅଭିନିବେଶର ବସ୍ତୁ ।

ଓଡ଼ିଆ କାରୁକୁ— ଏହି ଶିଳ୍ପୀ ଓ କଳାକୁଶଳ ଜାତିକୁ ଏକ ନିଶ୍ୱାସରେ କାମୁକ, ଯୌନସୁଖାନ୍ୱେଷୀ କହିବା ଯଥାର୍ଥ ନୁହେଁ । ଏହାର ସୂତ୍ର ବିଚାର ଅଗଣ୍ୟ । ଏଥିରେ ଗୁଣ୍ଡାମି କଲେ ଚଳିବ ନାହିଁ । ଜଗତର ଚାରିଆଡ଼େ ଯେ ଏହି ଅଶ୍ଳୀଳ ଛବିର ଚିହ୍ନ ଅଛି, ଏହାର ପ୍ରମାଣ ଭୂରି ଭୂରି ରହିଛି । କେବଳ ଯେ ଅଛି ସେ ନଜାଣି ଏହିପରି ଅହେତୁକୀ ଯୁକ୍ତିକରେ ।

ଅବଶ୍ୟ ଆଧୁନିକ ନୂତନ ଜଗତରେ ଯାହା ଶ୍ଳୀଳ ନୁହେଁ, ତାହା ଆଉ କେହି କଳ୍ପନାହାନ୍ତି । ଯାହା ଶ୍ଳୀଳ ତାହା କରୁଛନ୍ତି । ଭିନ୍ନ ରୁଚିର୍ହି ଲୋକଃ । ଯୁଗ ଯୁଗରେ ଧର୍ମ ବଦଳୁଛି । ଆଦର୍ଶ ବଦଳୁଛି । ଚାଲି ସବୁର ଭିତରେ ମନୁଷ୍ୟର ବଢ଼ିବାର ଆକାଂକ୍ଷା ରହିଛି । ଅତଏବ ଛାଡ଼ିବାକୁ କେହି ଆଦର୍ଶ କରି ଧରି ପାରେନା । ଉତ୍କଳର ଅସଂଖ୍ୟ କୋଟି କୋଟି ମନ୍ଦିର କହିଲେ ଅତ୍ୟୁକ୍ତି ହେବ ନାହିଁ— ସେଥିରେ କଣ କେବଳ ଯୋନି ଲିଙ୍ଗର ବୀଭତ୍ସ ଲୀଳା ସୃଷ୍ଟି ପାଇଁ ସେ ସବୁ ତିଆରି ହୋଇଥିଲା ? ତାହା ନୁହେଁ । ଆଉ ଯଦି ଏହା କହିବା ତାହାହେଲେ ମଧ୍ୟ ସମସ୍ତେ ସ୍ୱୀକାର କରିବାକୁ ବାଧ୍ୟ ହେବେ ଯେ ପୃଥିବୀର ସମସ୍ତ ଧର୍ମର ଅଭ୍ୟୁଦୟ ମୂଳରେ ଏହି ଲିଙ୍ଗ ଯୋନିର କଥା ଭୂରି ଭୂରି ଭାବରେ ରହିଛି । ଏହାକୁ ପରିତ୍ୟାଗ କରି ଜୀବନ ଯାପନ କରି ହେବ ନାହିଁ, ସଂସାର ବାନ୍ଧି ହେବ ନାହିଁ । ଏହା ଅଶ୍ଳୀଳ ନୁହେଁ । ମାନବର ଅନ୍ତର୍ହିତ ମନ କରି ଏହାକୁ ଅଶ୍ଳୀଳ ଭାବି ଲୁଚାଇବାର ଚେଷ୍ଟା କରୁଛି,

ଘୋଡ଼ାଇବାର ଚେଷ୍ଟା ହୁଅନ୍ତୁ । ଓଡ଼ିଶାର ଶିଳ୍ପଶାସ୍ତ୍ରରୁ ଜଣାପଡ଼େ ଯେ ମନ୍ଦିର ଉପରେ ଏପରି ବିବସ୍ତ୍ର ମୂର୍ତ୍ତି ଥିଲେ, ମନ୍ଦିର ଉପରେ ବଜ୍ରପାତ ହୁଏ ନାହିଁ । ସୁତରାଂ ଶିଳ୍ପୀମାନେ ଏହି ସଂସ୍କାରକୁ ଭିତ୍ତି କରି ମନ୍ଦିର ବାହାରେ ଅଶ୍ଳୀଳ ମୂର୍ତ୍ତି ଅଙ୍କନ କରିଥିବା ସମ୍ଭବପର । ଧର୍ମଶାସ୍ତ୍ରବିତ୍-ମାନଙ୍କ ମତରେ ପାର୍ଥିବ ଭୋଗ ବିଳାସ ପରିତ୍ୟାଗ କରି ନ ପାରିଲେ ସ୍ୱର୍ଗସୁଖ ଲାଭ ଅସମ୍ଭବ । ପାର୍ଥିବ ଭୋଗ ବିଳାସର ନିଦର୍ଶନ ସ୍ୱରୂପ ଅଶ୍ଳୀଳ ମୂର୍ତ୍ତିର ମୋହ ଏଡ଼ି ପାରିଲେ ଭଗବତ୍ ପ୍ରାପ୍ତି ସମ୍ଭବପର ହୋଇପାରେ ।

ଯେଉଁ ଓଡ଼ିଆ ଜାତି ଭୁବନେଶ୍ୱର, କୋଣାର୍କ ତିଆରି କରି ଥୋଇ ଦେଇଛି, ଯେଉଁ ଜାତି ଓଡ଼ିଶାର ମାନ ମନ୍ଦିର ତିଆରି କରି ଜଗତକୁ ବିସ୍ମିତ କରିଛି ଏବଂ ଆଜି ପର୍ଯ୍ୟନ୍ତ ଯାହା ସମକକ୍ଷ କୌଣସି ଜାତି ହୋଇପାରି ନାହିଁ, ସେ ଜାତିର ମହତ୍ତ୍ୱ ଯେ ବୁଝିବାର ଲୋକ ସେ ବୁଝିବ । ଜଙ୍ଗଲର ବାଘ, ଭାଲୁ ତାହା ବୁଝି ପାରନ୍ତି ନାହିଁ । ସାଧକ ଯେତେବେଳେ ମନ୍ଦିରରେ ପ୍ରବେଶ କରେ, ସେତେବେଳେ ସେ ଚାରିଆଡ଼େ ସେହି ସଂସାର ଚିତ୍ର ଦେଖେ, ଯାହାକୁ ଛାଡ଼ିଆସି ସେ ମୁକ୍ତି-ପାଇ ମନ୍ଦିରକୁ ପ୍ରବେଶ କରୁଅଛି । ଏହିଠାରେ ତାକୁ ବିଚାର କରିବାକୁ ହେବ, ବାଛିବାକୁ ହେବ, ପୁଣି ଗୃହସ୍ଥାଶ୍ରମରେ ପ୍ରବେଶ କରିବ, ପୁଣି ସଂସାର ଧର୍ମ କରିବ ନା ଅମରତ୍ୱର ସୁଖଲାଭ ପାଇଁ ଏ ସବୁ ଝଞ୍ଜାଳ ପାଇଁ ଛାଡ଼ିବ ? ଏହି ଭକ୍ତ ପାଇଁ ଏହି ସବୁ ସଂସାର ଚିତ୍ର । ଏ ତାହାର ପରୀକ୍ଷା—ମାନସିକ ପରୀକ୍ଷା । ମନ୍ଦିର ଗାତ୍ରରେ ଏହି ସବୁ ଚିତ୍ରାଙ୍କନ, ଏହି ସବୁ ଯୌନତତ୍ତ୍ୱ ସାଧକର ମନ ବୁଝିବା ପାଇଁ କୌଶଳ, ସନ୍ଧାନ ; ସାଧକ ମନ୍ଦିରର ବହିଃପ୍ରାଙ୍ଗଣ ଅତିକ୍ରମ କରି ଯେତେବେଳେ ଭିତରକୁ ଯାଏ, ଯେଉଁଠାକୁ ଗଲେ ଆରାଧ୍ୟ ଦେବତା ରହିଛନ୍ତି, ସେଠାରେ ସେ ଦେଖେ କଣ ? ସେ ଦେଖେ ସବୁ ଅନ୍ଧାର । ଆଲୁଅ ନାହିଁ । କେବଳ ପ୍ରଜ୍ୱଳିତ ଭାବରେ ଗୋଟିଏ ଦୀପ ଦେବତା ପାଖରେ ଜଳୁଅଛି । ଏହି-ଠାରେ ଭକ୍ତ ସାଧକ ଆତ୍ମାର, ଆପଣାର ଅନ୍ତର ଭିତରକୁ ପଶିବାକୁ

ଚିନ୍ତା କରିବାର, ନିବିଷ୍ଟ ହେବାର ସୁଯୋଗ ପାଏ ; ଏଠାରେ ସେ ଅଚିନ୍ତ୍ୟସ୍ଥ ସଂଘାତରୁ ଛାଣିହୋଇପାଏ । ଏଠାରେ ସେ ସବୁ ଭୁଲିଯାଏ । ଏଠାରେ ମୁକ୍ତିପାଏ । ଏହାହିଁ ମନ୍ଦିର ଗାତ୍ରରେ ଅଶ୍ଳୀଳଚିତ୍ରର ଗୋଟିଏ ଅନୁପମ ବ୍ୟାଖ୍ୟା । ମନ୍ଦିର ଦର୍ଶନକାରୀ ବ୍ୟକ୍ତି ସାଧାରଣ ଖୁସ୍ ଖେୟାଲେ ପଥଭ୍ରମଣକାରୀ ଦ୍ରଷ୍ଟା ନୁହେଁ, କିମ୍ବା ସେ ଜନ୍ ଗଡ଼ବଡ଼୍ ନୁହେଁ କିମ୍ବା ଜଗଦ୍ଧର୍ମ ସମ୍ପ୍ରଦାୟୀ ନୁହେଁ । ପ୍ରକୃତ ମନ୍ଦିର ଦର୍ଶନକାରୀ ବ୍ୟକ୍ତି ମୁମୁକ୍ଷୁ ଏବଂ ମୁମୁକ୍ଷୁ ତାକୁ କୁହାଯାଏ ଯାହାର ଅନ୍ୟ ବାସନାମାନ ଖସିଯାଇଛି କେବଳ ରହିଛି ବିବିକ୍ତରେ ମହାଶକ୍ତି ସହିତରେ ମିଳିତ ହେବା ।

ଅତଏବ ଏହି ଅଶ୍ଳୀଳ ଚିତ୍ର ପ୍ରକୃତ ମୁମୁକ୍ଷୁ ବୋଲଉଥିବା ବ୍ୟକ୍ତି-ମାନଙ୍କ ପକ୍ଷରେ ଗୋଟିଏ ଶେଷ କଠିନ ପରୀକ୍ଷା । ଏହାହିଁ ମନ୍ଦିର ଗାତ୍ରରେ ଅଶ୍ଳୀଳ ଚିତ୍ରର ଗୋଟିଏ ବ୍ୟାଖ୍ୟା ।

ଆଉ ଗୋଟିଏ କଥା । ଅଶ୍ଳୀଳତା କେଉଁଠି ? ଅଶ୍ଳୀଳତା ବହିର୍ଜ-ଗତରେ ନା ଅଶ୍ଳୀଳତା ଆମ ମନରେ ? ବସ୍ତୁତଃ କହିବାକୁ ଗଲେ ଅଶ୍ଳୀଳତା ଆମ ମନରେ । ଏହା Subjective ବା ଅପେକ୍ଷା ମନଭିତରେ । ମନଭିତରେ ଥିବା ଏହି ଅଶ୍ଳୀଳତା ରହିଛି । ସେଥିପାଇଁ ତାହା ଆମ ବାହାର ଜଗତରେ ଆମ ଆଖି ଗୁହିଥିବେ ପ୍ରତି-ଫଳିତ ହୋଇପଡ଼ି ଦିଶୁଛି । ଆପ୍ ଭଲ ତ ଜଗତ୍ ଭଲ । ଏକଥାର ତାତ୍ପର୍ଯ୍ୟ ଏଠାରେ ଅନୁଭବ କରିବା ଉଚିତ୍ । ଉତ୍କଳର ମନ୍ଦିର ଗାତ୍ରରେ ଯେଉଁସବୁ ଅଶ୍ଳୀଳ ଚିତ୍ର ଅଛି, ତାହା ବୌଦ୍ଧଧର୍ମର ମହାଯାନ ପ୍ରଭାବ ଯୋଗୁ ବୋଲି କେତେକଙ୍କର ମତ । ଏ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଅପେନ୍ଦ୍ର ବିଶେଷ ଭାବରେ ଅଲୋଚନା କରିଛନ୍ତି । ଶାନ୍ତି ନିକେତନର କଳାଶିଳ୍ପଗୁରୁ ଶ୍ରୀଯୁକ୍ତ ନନ୍ଦଲାଲ ବୋଷ ଏ ବିଷୟରେ ‘ପ୍ରବୁଦ୍ଧ ଭାରତ”ରେ ଏବଂ ‘ପ୍ରବାସୀ’ରେ ଆଲୋଚନା କରି-ଛନ୍ତି । ଏସବୁ ଯେ ଶିଳ୍ପର ଗୋଟିଏ ଭଙ୍ଗୀ ତାହା ନିଶ୍ଚିତ । ତାହା ଛଡ଼ା ତନ୍ତ୍ରରେ ଏପରି ଅନେକ କଥା ଥାଏ, ଯାହାର ଭିତରି ଅର୍ଥ ବୁଝିବା ସାଧାରଣଙ୍କ ପକ୍ଷରେ କଠିନ ।

ଅନେକ ପ୍ରମାଣ ମିଳେ ଯେ କନ୍ଦୁସ୍ତୁଗକାଳରେ ଅନେକ ଦେଶରେ ଲିଙ୍ଗ ଯୋନୀର ଶୋଭାଯାତ୍ରା ପ୍ରଚଳିତ ଥିଲା ।

---

[ ୪ ]

ଶ୍ରୀ ବସନ୍ତମୋହନ ସେନାପତି ଏଲ ଏଲ ତାଙ୍କର ଉର୍ଦ୍ଧ୍ୱରେ- ଯୌନତତ୍ତ୍ୱ ( ଯୌନ ସମ୍ବନ୍ଧ ) ପ୍ରବନ୍ଧରେ ( ସହକାର,୨ଭାଗ, ୬ଷ୍ଠ ସଂଖ୍ୟା, ଅଗ୍ନି ୧୩୮୦ ) ଲେଖିଅଛନ୍ତି,"ଯେଉଁ ବିଷୟର ଆଲୋଚନା କରିବାକୁ ପ୍ରବୃତ୍ତ ହେଉଅଛୁ, ସେହି ବିଷୟର ନାମୋଚ୍ଚାରଣ ଅନେକଙ୍କର କର୍ଣ୍ଣମୂଳେ ହୋଇପାରେ ! ସୁତରାଂ ପ୍ରଥମରୁ କୈଫିୟତ ସ୍ୱରୂପ ପଦେ ଅଧେ କହିବା ଦରକାର । ଯାହା ସତ୍ୟ ତାହା ଗୋପନ କରିବା ସୁନୀତ ନୁହେଁ କିମ୍ବା ତାହାର ପ୍ରକାଶ କରିବା ଦୁର୍ନୀତ ନୁହେଁ। ପ୍ରକୃତକୁ, ସତ୍ୟକୁ, ବାସ୍ତବକୁ ମନୁଷ୍ୟ ଲଜ୍ଜାକରେ ତେଣୁକରି ତାହାକୁ ବରାବର ଲୁଚାଇ ରଖି ରଖି ବାସ୍ତବକୁ, ସତ୍ୟକୁ ସ୍ପଷ୍ଟକରି ଜାଣିବାର ଉପାୟ ଏବଂ ମାନିବାର ଉପାୟ ନିଜ ହାତରେ ସେ ନଷ୍ଟ କରିଅଛି । ସତ୍ୟ ଯଦି ଅଶ୍ଳୀଳ ହୋଇପାରେ ବିଜ୍ଞାନ ଯଦି ଅଶ୍ଳୀଳ ହୋଇପାରେ ତା'ହେଲେ ଯୌନ ସମ୍ବନ୍ଧ ମଧ୍ୟ ଅଶ୍ଳୀଳ । କିନ୍ତୁ ବିଜ୍ଞାନ ରାଜ୍ୟରେ ଶ୍ଳୀଳ ଓ ଅଶ୍ଳୀଳ କଥା ଆଦୌ ଉଠିପାରେ ନାହିଁ । ବିଜ୍ଞାନର କାର୍ଯ୍ୟ ସତ୍ୟର ଅନୁସନ୍ଧାନ, ଯାହା ଲୁଚି ରହିଅଛି ତାହାକୁ ପ୍ରକାଶ କରିବା । ଯାହା ସତ୍ୟ ତାହା ସୁନ୍ଦର। ଯୌନତା ଯେ ସତ୍ୟ ଏବଂ ଦୃଢ଼ ସତ୍ୟ ତାହା ପ୍ରତ୍ୟେକ ଲୋକ ମୁହଁରେ ନ କହିଲେ ମଧ୍ୟ ମନେ ମନେ ବୁଝନ୍ତି । ବାସ୍ତବକୁ ଗୋପନ କରିବା- ଦ୍ୱାରା ଯଦି ତହିଁରୁ ପରିତ୍ରାଣ ମିଳନ୍ତା ତା'ହେଲେ ଦୁନିଆର ଅନେକ ଗୋଳମାଳ ଅତି ସହଜରେ ମିଟ୍ ମାଟ୍ ହୋଇ ଯାଇପାରନ୍ତା। ଜୀବ ବିଜ୍ଞାନରେ ଦେଖାଯାଏ ପ୍ରତ୍ୟେକ ପ୍ରାଣୀ ଓ ପ୍ରତ୍ୟେକ ମନୁଷ୍ୟ ଯୌନ ପ୍ରେରଣାର ଅଧୀନ । ଯୌନ ଶିକ୍ଷାର ଅଭାବ ଦ୍ୱାରା ବ୍ୟକ୍ତିଗତ

ତଥା ଜାତଗତ ଅପକର୍ଷ ଯେ ଘଟୁଅଛୁ ତାହା ଅସ୍ୱୀକାର କରହେବ-ନାହିଁ । ଜୀବନର ମୂଳରେ ଯୌନତା; ଯୌନ ସମ୍ବନ୍ଧ ବ୍ୟତୀତ ନୂତନ ଜୀବନ ସୃଷ୍ଟିହୋଇ ପାରେନାହିଁ । କିନ୍ତୁ ଏପରି ଗୁରୁତମ ବିଷୟ ସେକ ଆଲୋଚନା କରିବାକୁ ଆମ୍ଭେମାନେ ଏତେ ଉଦାସୀନ କାହିଁକି ? ଏ ବିଷୟରେ କଥାବାର୍ତ୍ତା କରିବା ମଧ୍ୟ ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ମତରେ ଅପରାଧ, କାଗଜ କଲମରେ ଲେଖିବା ତ ବହୁତ ଦୂରର କଥା ! ଅନ୍ୟ ଲୋକଙ୍କ କଥା ଛାଡ଼ ଦଅନ୍ତୁ, ଜଣେ ସାହିତ୍ୟ ଅଧ୍ୟାପକ ମଧ୍ୟ ଉଦ୍ଭିଦ ରାଜ୍ୟରେ ଯୌନତା ବିଷୟକ ଗୋଟିଏ ପ୍ରବନ୍ଧ ଗୋଟିଏ ମାସିକ ପତ୍ରରେ ଛପା ହେବା ଅନୁମୋଦନ କରି ପାରିଲେ ନାହିଁ । କାରଣ ଏହି ଯେ ତାହା ପାଠକଲେ ଛାତ୍ରମାନଙ୍କର ଚରିତ୍ର ଖରାପ ଓ ମନ ବିକୃତ ହୋଇ ଉଠିବ । ଅଥଚ କଲେଜରେ ଯେଉଁ ଛାତ୍ରମାନେ ବୋଟାନି ବା ଉଦ୍ଭିଦ ବିଦ୍ୟା ଅଧ୍ୟୟନ କରନ୍ତି ସେମାନଙ୍କୁ ଉଦ୍ଭିଦର ଯୌନତା ବିଷୟରେ ଶିକ୍ଷା ଦିଆଯାଏ ଏବଂ ଉକ୍ତ ପ୍ରବନ୍ଧରେ ଉଦ୍ଭିଦ ରାଜ୍ୟର ଯୌନତା ସହିତ ପ୍ରାଣୀ ରାଜ୍ୟର ଯୌନତ୍ୱର କିପରି ସାମଞ୍ଜସ୍ୟ ଏତିକି ମାତ୍ର ଆଲୋ-ଚନା କରାଯାଇଥିଲା । କାରଣ ବିଜ୍ଞାନ ମତରେ ଯୌନତାର ମୂଳତତ୍ତ୍ୱ ଦୁଇ ରାଜ୍ୟରେ ସମାନ । ଆଲୋଚ୍ୟ ବିଷୟ ପ୍ରତି ଲୋକମାନଙ୍କର ଅନାସ୍ଥାର କେତୋଟି କାରଣ ଆମ୍ଭେମାନେ ଏଠାରେ ଉଲ୍ଲେଖ କରୁଅଛୁ । ପ୍ରଥମ—ବିଜ୍ଞାନର ଉଦ୍ଦେଶ୍ୟ ପ୍ରତି, ଅନେକ ଶିକ୍ଷିତ ବ୍ୟକ୍ତିଙ୍କର ମଧ୍ୟ ଏକ ପ୍ରକାର ସ୍ୱଭାବଗତ ସହାନୁଭୂତିର ଅଭାବ ଦେଖାଯାଏ; ବୈଜ୍ଞାନିକ ବିଶ୍ଳେଷଣର କୌଣସି ଆବଶ୍ୟକତା ଅଛି ବୋଲି ସେମାନେ ମନେ କରନ୍ତି ନାହିଁ । କୌତୂହଳ ପ୍ରିୟ ନ ଥିବାରୁ ସେମାନେ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଇଚ୍ଛା କରନ୍ତି ନାହିଁ । କାରଣ ଯେଉଁ ଅଫୁରନ୍ତ ଜୀବନ ସ୍ରୋତ ଦ୍ୱାରା ସେମାନେ ଗୃହୀତ

ଯେ ବିଷୟରେ ସେମାନେ କିଛି ଜାଣିବାକୁ ଚାହାନ୍ତି ନାହିଁ; କାରଣ ବିଜ୍ଞାନ ଦ୍ୱାରା ଯେ ଜୀବନ ନିୟମିତ ହୁଏ ତାହା ସେମାନେ ବୁଝନ୍ତି ନାହିଁ । ଦ୍ୱିତୀୟ—ଅନେକଙ୍କ ମତରେ କବି ବର୍ଣ୍ଣିତ ସ୍ୱର୍ଗରାଜ୍ୟର ମହା ରହସ୍ୟମୟ ପ୍ରେମକୁ ପଦାକୁ ଟାଣି ଆଣି ତାହାର ରହସ୍ୟ ଖୋଲତାଡ଼ କରିବା ବଡ଼ ଅସୁନ୍ଦର କଥା, ପ୍ରେମ ରାଜ୍ୟରେ ବିଜ୍ଞାନ ଗୋଡ଼ ପକାଇଲେ ସେଟା ତାର ଅନଧିକାର ପ୍ରବେଶ । ଆଉ ଏଥିରେ ଲାଭ ବା କଣ ସୁଖ ବା କଣ । ତୃତୀୟ—ଅନ୍ୟାନ୍ୟଙ୍କ ମତରେ ଯୌନତା ବିଷୟଟା ବଡ଼ ଅଶ୍ଳୀଳ; ଏ ବିଷୟ ଆଲୋଚନା କରିବା ନିତାନ୍ତ ନିର୍ଲଜ୍ଜତା, ଅସଭ୍ୟତା, ଏମନ୍ତକି ପାପ ।

ଅନେକ କହନ୍ତି ବିଜ୍ଞାନ ମାହାତ୍ୟରେ ଯୌନତା ବିଷୟକ ଜ୍ଞାନଦ୍ୱାରା ମନର ବିକାର ଉପସ୍ଥିତ ହୁଏ । କିନ୍ତୁ ଏକଥା ଠିକ୍ ନୁହେଁ । ବରଂ ବିଜ୍ଞାନର ଅଭାବରୁ ଅଜ୍ଞତା ଦ୍ୱାରା ନ ଜାଣିବା ଦ୍ୱାରା ମନରେ ବିକାର ଉପସ୍ଥିତ ହୋଇଥାଏ ଏବଂ ଜୀବନର ଗତି ସୁନିୟମିତ କରିବାରେ ଭ୍ରମ ଘଟିଥାଏ । ଉଦ୍ଭିଦବିଜ୍ଞାନ ଓ ଜୀବବିଜ୍ଞାନ ପାଠ କଲେ ମଧ୍ୟ ଯୌନତା ସମ୍ବନ୍ଧୀୟ ପ୍ରଧାନ ବିଷୟଗୁଡିକ ଜଣାଯାଏ ଏବଂ ମନରେ କୌତୂହଳ ନିବୃତ୍ତ ହୁଏ । ଜାଣିବା ଦ୍ୱାରା ଯେ ପାପ ଆଡକୁ ଅଧିକ ପ୍ରଲୋଭନ ହେବ ଏହା କି ଠିକ୍ ଯୁକ୍ତି ? ଜୀବରାଜ୍ୟର କ୍ରମ ବିକାଶ ମାର୍ଗରେ ଓ ଉନ୍ନତି ପଥରେ ଯୌନ ସମ୍ବନ୍ଧ ଗୋଟିଏ ବିଶିଷ୍ଟ ଉପାୟ । ଯୌନ ସମ୍ବନ୍ଧ ବିହୀନ ହୋଇ ଜୀବରାଜ୍ୟ ଚଳି ନ ପାରେ । ଜୀବନର ଗତି ଏବଂ ଜୀବରାଜ୍ୟର ସ୍ଥିତି ଯୌନତା ଉପରେ ନିର୍ଭର କରେ । କି ଜୀବରାଜ୍ୟରେ କି ଉଦ୍ଭିଦ ରାଜ୍ୟରେ ଜୀବନ ସଂଗ୍ରାମରେ କୃତକାର୍ଯ୍ୟ ହୋଇ ବଞ୍ଚିବା ନିମନ୍ତେ (ଅର୍ଥାତ୍ ବିଲୁପ୍ତ ନ ହେବା ନିମନ୍ତେ) ଯୌନ ମିଳନ ଅବଶ୍ୟକ; ସୁତରାଂ ନୃତତ୍ତ୍ୱ ଦୃଷ୍ଟିରେ ବିଷୟଟିକୁ କେବେହେଁ କୁରୁଚି ପୂର୍ଣ୍ଣ କୁହାଯାଇ ନ ପାରେ ।

ଆମ୍ଭେମାନେ ପ୍ରଥମେ ଉଦ୍ଭିଦମାନଙ୍କର ଯୌନ ସମ୍ବନ୍ଧର ଆଲୋଚନା କରିବୁ । କୌଣସି ଗଛର ଜୀବନ ବୃତ୍ତାନ୍ତ ପର୍ଯ୍ୟବେକ୍ଷଣ କଲେ ଦେଖା ଯାଏ ଯେ ଫୁଲ ଓ ବୀଜ ଉତ୍ପାଦନ କରିବା ନିମନ୍ତେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ଗଛ ତାହାର ସମସ୍ତ ଶକ୍ତି ବ୍ୟୟ-କରେ । ଆମ୍ଭେମାନେ ଜାଣୁ ଯେ ମଞ୍ଜି ବୁଣା ହେଲେ ତହିଁରୁ ନୂଆ-ଗଛ ଉତ୍ପନ୍ନ ହୁଏ ସୁତରାଂ ମଞ୍ଜି ଉତ୍ପାଦନ କରିବା ଦ୍ୱାରା ଗଛ ସନ୍ତାନ ବା ନୂଆଗଛ ଉତ୍ପାଦନ କରେ । ମଞ୍ଜିରୁ ଯେଉଁ ନୂଆଗଛ ଜନ୍ମେ, ତାହା ପ୍ରତ୍ୟେକ ପ୍ରଧାନ ବିଷୟରେ ଠିକ୍ ଉତ୍ପାଦକ ବା ଜନ୍ମ ଦାତା ଗଛ ସଦୃଶ । ଫୁଲଠାରୁ ଆରମ୍ଭ କରି ମଞ୍ଜି ହେବା ଏବଂ ନୂଆଗଛ ହେବା ପର୍ଯ୍ୟନ୍ତ ଏହି ସମସ୍ତ କ୍ରିୟାକୁ ପ୍ରଜନନ କୁହାଯାଏ । ଜୀବନର ବା ସଜୀବ ପଦାର୍ଥର କେତେ ଗୁଡ଼ିଏ ଲକ୍ଷଣ ଅଛି; ତନ୍ମ-ଧ୍ୟରୁ ଅବିଚ୍ଛିନ୍ନତା ବା କ୍ରମିକତା ଗୋଟିଏ ପ୍ରଧାନ ଲକ୍ଷଣ । ପ୍ରଜନନ କ୍ରିୟା ଦ୍ୱାରା ଜୀବନର ଏ ଅବିଚ୍ଛିନ୍ନତା ବା କ୍ରମିକତା ସଂରକ୍ଷିତ ହୁଏ, କାରଣ ପ୍ରଜନନ, ପୂର୍ବବର୍ତ୍ତୀ ବଂଶ ସହିତ ପରବର୍ତ୍ତୀ ବଂଶକୁ ସଂଯୁକ୍ତ କରେ । ଏହାକୁ ବଂଶାନୁକ୍ରମ କୁହାଯାଏ । ଜୀବ ଓ ଉଦ୍ଭିଦର ଭିନ୍ନ ଭିନ୍ନ ଜାତି, ବିଶେଷ କିଛି ପରିବର୍ତ୍ତିତ ନ ହୋଇ ବହୁ ଶତାବ୍ଦୀ ପର୍ଯ୍ୟନ୍ତ ବର୍ତ୍ତିରହି ପାରନ୍ତି କିମ୍ବା ଧୀରେ ଧୀରେ ଅତି ଅଳ୍ପ ପରିବର୍ତ୍ତନ ଦ୍ୱାରା ସେମାନଙ୍କର ହ୍ରାସ ବୃଦ୍ଧି ହୋଇପାରେ କିନ୍ତୁ ଜୀବନର ସମ ଅକ୍ଷୁର୍ଣ୍ଣ ରହେ, କେବେହେଁ ଭଙ୍ଗେ ନାହିଁ ।

ଯୌନ ସମ୍ବନ୍ଧ ଦ୍ୱାରା ଯେ ସାଧାରଣତଃ ଉଚ୍ଚ ଜୀବ ଓ ଉଦ୍ଭିଦ ମାନଙ୍କରେ, ପ୍ରଜନନ ବା ବଂଶବୃଦ୍ଧି ହୋଇଥାଏ ଏହା ପ୍ରାୟ ସମସ୍ତେ ଜାଣନ୍ତି । ଏହି ଉପାୟ ଦ୍ୱାରା ଗୋଟିଏ ନୂତନ ଜୀବ ବା ଉଦ୍ଭିଦ ଉତ୍ପନ୍ନ ହେବା ପୂର୍ବରୁ ଦୁଇଗୋଟି ମୌଳିକ ଜୈବ ପଦାର୍ଥର ସଂଯୋଗ ହେବା ଆବଶ୍ୟକ । ପ୍ରଜନନ ନିମନ୍ତେ ଏହି ଦୁଇପ୍ରକାର

ମୌଳିକ ଜୈବ ପଦାର୍ଥ ସାଧାରଣତଃ ସମଜାତୀୟ ଦୁଇପ୍ରକାରି ଭିନ୍ନ-ପ୍ରାଣୀ ବା ଉଦ୍ଭିଦ ଦ୍ୱାରା ଉତ୍ପନ୍ନ ହୋଇଥାଏ; ଏହି ଦୁଇପ୍ରକାର ଭିନ୍ନ ଭିନ୍ନ ପ୍ରାଣୀ ବା ଉଦ୍ଭିଦକୁ ଆକାର ଗଠନ ଓ କାର୍ଯ୍ୟ ଭେଦରେ ସ୍ତ୍ରୀ ପୁରୁଷ କୁହାଯାଏ ।

ଗୋଟିଏ ଫୁଲ ପରୀକ୍ଷା କଲେ ଦେଖାଯାଏ ଯେ ଗଛର ଜନନେନ୍ଦ୍ରିୟ ଦ୍ୱୟ ଫୁଲ ମଧ୍ୟରେ ବର୍ତ୍ତମାନ ଅଛି । ଜୀବଜନ୍ତୁ ସହିତ ସାମଞ୍ଜସ୍ୟ ହେତୁରୁ ଏହି ଦୁଇ ଅଙ୍ଗକୁ ସ୍ତ୍ରୀ ପୁରୁଷ ନାମ ଦିଆଯାଇଥାଏ ।

ଯୌନ ପ୍ରେରଣା ଜୀବନର ମୂଳଦୁଆ; ଏହା ଜୀବଜୀବ ସହିତ ଓତପ୍ରୋତ (ଦୃଢ଼) ଭାବରେ ଜଡ଼ିତ । ମନୁଷ୍ୟ ହେଉ ବା ଅନ୍ୟାନ୍ୟ ଜୀବ ହେଉ ବା ଉଦ୍ଭିଦ ହେଉ, ଯୌନ ସମ୍ବନ୍ଧ ଏବଂ ଯୌନ କ୍ରିୟାର ପ୍ରଧାନ ଉଦ୍ଦେଶ୍ୟ— ପ୍ରଜନନ ବା ବଂଶ ବୃଦ୍ଧି ।"

ଯୌନ କ୍ଷୁଧା ତୃପ୍ତି ବିକାଶ ପାଇଁ ଗୋଟିଏ ପ୍ରକୃତିଦତ୍ତ ମହାନ୍ ପ୍ରେରଣା । ସ୍ତ୍ରୀ ପୁରୁଷଙ୍କର ସହଯୋଗିତା ଦ୍ୱାରା ପ୍ରଜନନ କ୍ରିୟା ସମ୍ପାଦିତ ହୁଏ—ଏହା ଅତି ପବିତ୍ର, ଧର୍ମର କାର୍ଯ୍ୟ; ସେଥି ନିମିତ୍ତ ବିବାହ ଦ୍ୱାରା ସ୍ତ୍ରୀ ପୁରୁଷ ମିଳନ ଧର୍ମର ଅଙ୍ଗରୂପେ ପରିଗଣିତ ଓ ଅନୁଷ୍ଠିତ ହୋଇଥାଏ । ଧର୍ମର ଅନ୍ତର୍ଗତ ହେବାଦ୍ୱାରା ସ୍ତ୍ରୀ ପୁରୁଷଙ୍କ ମିଳନକୁ ଅତି ପବିତ୍ର ସ୍ଥାନ ଦିଆଯାଇଅଛି । ଧର୍ମ ସହିତ ଯୌନମିଳନର ଘନିଷ୍ଠ ସମ୍ବନ୍ଧ ଦର୍ଶାଇବା ପାଇଁ ମନ୍ଦିର ଗାତ୍ରରେ ଦେବଦେବୀଙ୍କ ବାସସ୍ଥାନରେ ମାନବୀୟ ଯୁଗଳ ମୂର୍ତ୍ତିମାନ ଖଞ୍ଜିତ ହୋଇଅଛି । ଏହାଦ୍ୱାରା ସଂଯମ ଆସେ, ବିଶୃଙ୍ଖଳତା ଆସେ ନାହିଁ । ଧର୍ମଭାବ ନ ଥିଲେ ସାମାଜିକ ବିପର୍ଯ୍ୟୟର ସମ୍ଭାବନା ଏବଂ ମାନସିକ ଅବନତି ଓ ବିକାର ଦ୍ୱାରା ଯଥେଚ୍ଛାଚାରିତାର ଓ ବ୍ୟଭିଚାରିତାର ସମ୍ଭାବନା

ଅଧିକ । ସୁତରାଂ ମନୁଷ୍ୟର ପଶୁ ପ୍ରକୃତିକୁ ଧର୍ମ ଓ ଦେବ ଭାବାପନ୍ନ କରି ଅନ୍ୟ ପ୍ରାଣୀଙ୍କର ମାତ୍ରା ଲାଘବ କରିବାର ଏବଂ ସଂଯତ ଓ ସୁନିୟନ୍ତ୍ରିତ କରିବାର ପ୍ରୟାସ କରାଯାଇଅଛି । ମାନବତ୍ୱ ମଧ୍ୟରେ ଦେବତ୍ୱ କେତେ ଦୂର ପରିସ୍ଫୁଟ ହୋଇପାରେ ତାହା ଏଥିରେ ପରିଦୃଷ୍ଟ ।

ଭାରତର ଆର୍ଯ୍ୟମାନେ ତାଙ୍କର ଜୀବନର ଚାରିଗୋଟି ଉଦ୍ଦେଶ୍ୟ ସ୍ଥିର କରି ଅଛନ୍ତି । ତାହା ଯଥାକ୍ରମେ ଧର୍ମ, ଅର୍ଥ, କାମ, ମୋକ୍ଷ—ଏହାକୁ ଚତୁର୍ବର୍ଗ କହନ୍ତି । ସଂସାରିକ ଜୀବନରେ ମୋକ୍ଷର ପ୍ରୟୋଜନୀୟତା ନାହିଁ — ଅଛି ଅର୍ଥ ଓ କାମର । ଏହି ଦୁଇଟି ମଧ୍ୟ ଧର୍ମ ଉପରେ ପ୍ରତିଷ୍ଠିତ । ମାନବଜୀବନର ସୁଖ ନିର୍ବାହ ନିମିତ୍ତ ପ୍ରାଚୀନ ଆର୍ଯ୍ୟ ଋଷିମାନେ ଏହି ଚତୁର୍ବର୍ଗ ବିଷୟରେ ଶାସ୍ତ୍ରମାନ ପ୍ରଣୟନ କରିଅଛନ୍ତି । ମାନବ ଜୀବନର ଯାହା କରଣୀୟ ଓ ଯାହା ବର୍ଜନୀୟ ତାହା ଧର୍ମ ଶାସ୍ତ୍ରରେ କଥିତ ; ଧର୍ମାନୁମୋଦିତ ଅର୍ଥ ଓ କାମ ସ୍ପୃହଣୀୟ ଅନ୍ୟଥା ତ୍ୟାଜ୍ୟ । ପ୍ରାଚୀନ ଆର୍ଯ୍ୟ ପଶୁଜୀବନରୁ ମାନବକୁ ଦେବତ୍ୱ ପ୍ରଦାନ କରିବା ନିମିତ୍ତ ଉପାୟମାନ ସଂବିଧାନ କରିଅଛନ୍ତି । ଦେବତ୍ୱର ଅର୍ଥ ଦୁଃଖହୀନ ସୁଖ ପ୍ରାପ୍ତି । ସୃଷ୍ଟି ପ୍ରକ୍ରିୟାରେ ପ୍ରଜନନ ବିଧି ଅତୀବ ପ୍ରଧାନ । ସଂଯତ ସୁଖମୟ ଗୃହସ୍ଥ ଜୀବନ ଯାପନ ନିମିତ୍ତ କାମ ଶାସ୍ତ୍ରମାନ ପ୍ରଣୀତ ହୋଇଅଛି । ପୁରୁଷ ଓ ନାରୀମାନଙ୍କର ପ୍ରକୃତି ଭେଦରୁ ପ୍ରକାର ଭେଦ ଗୃହୀତ ଏବଂ ସେହି ସ୍ତ୍ରୀ ପୁରୁଷଙ୍କର କାମ ଚରିତାର୍ଥ ନିମିତ୍ତ ଏବଂ ତଥା ବ୍ୟଭିଚାରିତା ନିବାରଣାର୍ଥ ବିଧାନମାନ ଉକ୍ତ କାମଶାସ୍ତ୍ରାଦିରେ ଅଛି ଯଥା— ନଖ-ଦନ୍ତ-କ୍ଷତ, ଚୁମ୍ବନ, ଆଲିଙ୍ଗନ ଓ ବିବାଦ । ଏହି ପ୍ରତ୍ୟେକର ମଧ୍ୟ ପ୍ରକାର ଭେଦ ଅଛି । ରମଣକ୍ରିୟାରେ ଚତୁଃଷଷ୍ଟି ବନ୍ଧର ବିଧାନ କାମ ଶାସ୍ତ୍ରରେ ଅଛି । ଏହି ଶାସ୍ତ୍ର ପୂର୍ବେ ଉଚ୍ଚ ସମ୍ପ୍ରଦାୟର ବ୍ରାହ୍ମ-

ଗୃହସ୍ଥମାନେ ପାଠ କରୁଥିଲେ । ଆଶ୍ଚର୍ଯ୍ୟ ହେବାକୁ ହୁଏ କୁମାରୀ-
ମାନେ ମଧ୍ୟ ଏଥିରେ ଶିକ୍ଷାପ୍ରାପ୍ତ ହେଉଥିଲେ । ଏହା ବାତ୍ସ୍ୟାୟନ
କାମସୂତ୍ରରେ ସ୍ପଷ୍ଟଭାବରେ କହିଅଛନ୍ତି ଯଥା (୧) "ପ୍ରାଗ୍‌ଯୌବନାତ୍‌
ସ୍ତ୍ରୀ" ଓ (୨) "ପ୍ରତ୍ତା ପତିଗୃହେ ପତ୍ୟୁରଭିପ୍ରାୟାତ୍‌" । ଦ୍ୱିତୀୟ ସୂତ୍ରରୁ
ଜଣାଯାଏ ବିବାହିତା ପତିର ଅନୁମତି କ୍ରମେ ପତିର ଗୃହରେ କାମ-
ସୂତ୍ର ପାଠ କରିବ ଏବଂ ପ୍ରଥମ ସୂତ୍ରରେ ଯୌବନ ପ୍ରାପ୍ତି ପୂର୍ବରୁ
ବାଳିକା ଏ ଶାସ୍ତ୍ରରେ ପ୍ରବେଶ କରିବ । ଆଜିକାଲି ମନୁଷ୍ୟ ପ୍ରକୃତିର
ପରିବର୍ତ୍ତନ ସଙ୍ଗେ ଏହା ଆଦରଣୀୟ ହେଉନାହିଁ କିନ୍ତୁ ପୂର୍ବେ ଯେ
ଆଦରଣୀୟ ହେଉଥିଲା ତାହା କଣ ପୂର୍ବଯୁଗର ଅନୁନ୍ନତତା ପ୍ରକାଶ
କରେ ? ଆମ୍ଭମାନଙ୍କ ମତରେ ସାଂସ୍କୃତିକ ସଭ୍ୟତା ଅବିଳ ମନୋ-
ବୃତ୍ତି ଯୁକ୍ତ । ଆମ୍ଭମାନଙ୍କର ଏହି ଉକ୍ତି ସେକାଳର [illegible]ଙ୍କ ଉକ୍ତି
ଦ୍ୱାରା ସମର୍ଥିତ । ବାତ୍ସ୍ୟାୟନଙ୍କ ପୂର୍ବରେ ଆମ୍ଭେମାନେ ଅନେକ କାମ-
ସୂତ୍ରକାରଙ୍କ ନାମ ଦେଖିବାକୁ ପାଉଁ ଯଥା—ଗୋନର୍ଦ୍ଦୀୟ, ଘୋଟକ
ମୁଖ, ପାଞ୍ଚାଳ ପ୍ରଭୃତି । ବାତ୍ସ୍ୟାୟନଙ୍କ ସମୟ ଯଦି ଆମ୍ଭେମାନେ ଖ୍ରୀଷ୍ଟ
ଜନ୍ମରେ ଖ୍ରୀଃପୂଃ ୨ୟ ଶତାବ୍ଦୀ ଧରୁ ତେବେ ଆମ୍ଭେମାନେ କହିବୁ ଯେ ଏ
ଶାସ୍ତ୍ର ପ୍ରାୟ ଖ୍ରୀଃ ପୂଃ ୪ର୍ଥ ବା ୫ମ ଶତାବ୍ଦୀରୁ ଭାରତୀୟଦ୍ୱାରା ଅନୁଶୀଳିତ
ହୋଇ ଆସୁଅଛି । ପରେ ବୌଦ୍ଧ ଧର୍ମର ମହାଯାନ ଶାଖାନ୍ତର୍ଗତ
ଯୋଗାଚାରର ବଜ୍ରଯାନ ପ୍ରସୂତ ସହଜ ଯାନର ପ୍ରଚାର କାଳରେ—
ପ୍ରାୟ ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ତନ୍ତ୍ରର
ବହୁଳ ପ୍ରଚାର ହେତୁ ଯୁଗନଦ୍ଧ ଦେବତାଙ୍କ ମୂର୍ତ୍ତିର ଗଠନ କିମ୍ବା
ସମ୍ପାଦିତ ହେଲା ଅର୍ଥାତ୍ ୬୪ ବନ୍ଧର ମୂର୍ତ୍ତିମାନ ନିର୍ମିତ ହେବାର
ପ୍ରସାର ଲଭିଲା । ଏହି ସହଜଯାନ ଧର୍ମାବଲମ୍ବୀ ଇନ୍ଦ୍ରଭୂତି ଓ ଅନଙ୍ଗ
ବଜ୍ରାଦି ଜଗନ୍ନାଥଙ୍କୁ ପ୍ରଧାନ ଦେବତାରୂପେ ସ୍ୱରଚିତ ଗ୍ରନ୍ଥମାନଙ୍କର ଆଦ୍ୟରେ
ନମସ୍କାର କରିଅଛନ୍ତି । ଆମ୍ଭମାନଙ୍କର ଓଡ଼ିଶାର ପଞ୍ଚସଖା ବଳରାମ

ଜଗନ୍ନାଥଅଭ ଓ ତତ୍ପରବର୍ତ୍ତୀ ବୈଷ୍ଣବ କବିମାନେ ଜଗନ୍ନାଥଙ୍କୁ ବୌଦ୍ଧ ମୂର୍ତ୍ତି ରୂପେ ଗ୍ରହଣ କରିଅଛନ୍ତି । ଅସ୍ମମାନଙ୍କର ଉପର କଥିତ ବାକ୍ୟବଳୀରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସହଜଯାନର ପ୍ରଭାବରୁ ଉକ୍ତ ଅଶ୍ଳୀଳ ମୂର୍ତ୍ତିମାନ ଯାହା କି ଦେବାଳୟମାନଙ୍କ ଗାତ୍ରରେ ଖୋଦିତ ହୋଇଅଛି ତାହା ସହଜଯାନ ପ୍ରଚେଷ୍ଟ ଦେବତାଙ୍କ ରୂପ ଛଡ଼ା ଅନ୍ୟ କିଛି ନୁହେ । ପୁନଶ୍ଚ ସନାତନଧର୍ମୀମାନଙ୍କର ମତ ଯେ ଦେବ ମନ୍ଦିର ମଧ୍ୟସ୍ଥ ଦେବତା ଦର୍ଶନ ଓ ଉପାସନାରେ ମୋକ୍ଷର ଉପ-ଯୋଗିତା ଅଛି । ହୃଦୟ କାମଶୂନ୍ୟ ହେଲେ - ଅହଙ୍କାର ଶୂନ୍ୟ ହେଲେ ଦେବତାଙ୍କ ନିକଟରେ ଯାଇ ଲୋକ ଆତ୍ମ ସମର୍ପଣ କରେ ଓ ମୁକ୍ତିର ପଥରେ ପଥିକ ହୁଏ । କାମର କଥା ବାହାରର ବିଷୟ । ବାହାର ବିଷୟରେ ଆସକ୍ତ ରହିଲେ ଭିତର କଥା ଲାଭ କରିବା ଅସମ୍ଭବ ।

ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ( ରାଏବାହାଦୁର ) ରସରତ୍ନ ଚିନ୍ତାମଣିର ମୁଖବନ୍ଧରେ ଲେଖିଅଛନ୍ତି :— 'ଅନେକ କାମଶାସ୍ତ୍ର ଉପେକ୍ଷିତ; କାରଣ ତଦ୍ୱାରା ସମାଜରେ ବିଶୃଙ୍ଖଳା ଓ ବ୍ୟଭିଚାରିତାର ଆଶଙ୍କା ଲୋକେ କରନ୍ତି । କାମସୂତ୍ର ପ୍ରଣେତା କିନ୍ତୁ ଉଦ୍ଦେଶ୍ୟ ମହାପ୍ରାଣ ବାତ୍ସ୍ୟାୟନ ଜଗତର ସୁପ୍ରଜନନ ତଥା ପ୍ରକୃତ ମାନବ ଜୀବନର ଫଳିତ ନିମିତ୍ତ କରୁଣୋକ ହୃଦୟରେ ଯେ ଶାସ୍ତ୍ର ଲେଖିଅଛନ୍ତି, ତାହା ପାଠ କଲେ ଜଣାଯାଏ ତାହା କାମୁକ ନିମିତ୍ତ ପାଶବ ବୃତ୍ତିର ଚରିତାର୍ଥତା ନିମିତ୍ତ ଲିଖିତ ହୋଇନାହିଁ:—ତାହା ଜଗତର ମଙ୍ଗଳ ନିମିତ୍ତ । ମାନବ ଜୀବନର ସୂକ୍ଷ୍ମ ପର୍ଯ୍ୟାଲୋଚନା ଦ୍ୱାରା ଯେଉଁ ଆର୍ଯ୍ୟ ଧର୍ମ, ଅର୍ଥ, କାମ, ମୋକ୍ଷକୁ ଚତୁର୍ବର୍ଗ ବା ଜୀବନର ଅପରିତ୍ୟାଜ୍ୟ ମୁଖ୍ୟ ଉଦ୍ଦେଶ୍ୟ ଚତୁଷ୍ଟୟ ବୋଲି ନିର୍ଦ୍ଧାରଣ କରିଥିଲେ, ସେହି ଆର୍ଯ୍ୟ କାମର ଉପଯୋଗିତା ଉପଲବ୍ଧି କରିଥିଲେ ଏବଂ ତାହାର ବିଶ୍ଳେ

ବର୍ଣ୍ଣନରେ ପ୍ରବୃତ୍ତ ହୋଇଥିଲେ । ସାର୍ବଜନୀନ ମଙ୍ଗଳ ସାଧନ ପରା-ୟଣ ସେହି ଆର୍ଯ୍ୟମାନଙ୍କ ପ୍ରକୃତିର ଦୈବୀ ଶକ୍ତିକୁ ଏକାବେଳକେ ଉପେକ୍ଷା କରି ପାରି ନ ଥିଲେ । ଏତଦ୍ଦୃଷ୍ଟିରେ ମହାକବି କାଳିଦାସଙ୍କ-ଠାରୁ ଶ୍ରୀହର୍ଷଙ୍କ ପର୍ଯ୍ୟନ୍ତ କବିମାନେ ପ୍ରକୃତିର ସ୍ଥଳ ବିଶେଷରେ କାମ-ଶାସ୍ତ୍ରାନୁଯାୟୀ ବାକ୍ୟମାନ ଯୋଜନା କରିଅଛନ୍ତି । ଏହି ଲୋକ ଶିକ୍ଷକମାନଙ୍କର ଏବମ୍ବିଧ ଆଚରଣ ଦୋଷାବହ ନୁହେଁ ବରଂ ଶ୍ରେୟସ୍କର ।

ଶ୍ରୀ ବାଙ୍କିମ ଦେବବର୍ମା ଅଶ୍ଳୀଳ ବିଗ୍ରହ ବିଷୟକ ଗୋଟିଏ ପ୍ରବନ୍ଧରେ ଲେଖିଅଛନ୍ତି 'ଦେବାଳୟର ବହିର୍ଭାଗ ପ୍ରକୃତିର ବୋଲି ସୂଚିତ ହେବା ନିମିତ୍ତ ତଦୁପରି ଅଶ୍ଳୀଳ ବିଗ୍ରହ ନିଚୟ ନିର୍ମିତ ।

